# ଅନ୍ତିମ ପର୍ବ

ଶ୍ରୀ ରବୀନ୍ଦ୍ର ନାଥ ଦାସ

ଶ୍ରୀ ପ୍ରକାଶନୀ
ମଙ୍ଗଳ କାର୍ଯ୍ୟାଳୟ
ଖୋର୍ଦ୍ଧା-୭୫୨୦୫୫
ଜି : ପୁରୀ ( ଓଡ଼ିଶା )

# ଅନ୍ତିମ ପର୍ବ

( ଏକ ଭକ୍ତିଧର୍ମୀ ନାଟକ )

ରଚନା :
ରବୀନ୍ଦ୍ରନାଥ ଦାସ

ପ୍ରକାଶକ :
ଶ୍ରୀ ପ୍ରକାଶନୀ
ମହାଲ କାର୍ଯ୍ୟାଳୟ
ଖୋର୍ଦ୍ଧା-୭୫୨୦୫୫
ଜି : ପୁରୀ ( ଓଡ଼ିଶା )

ପ୍ରଥମ ପ୍ରକାଶ : ୧୯୯୨

ମୁଦ୍ରଣ : ଜନ-ସାହିତ୍ୟ ପ୍ରେସ ଆଣ୍ଡ ପବ୍ଲିକେସନ୍ସ
ଭଗତପୁର, କଟକ-୯

ମୂଲ୍ୟ : ବାର ଟଙ୍କା ମାତ୍ର
ବନ୍ଧେଇ : ଚଉଦ ଟଙ୍କା

ANTIMA PARBA, An Oriya Natak by RABINDRA NATH DAS. Published by Sree Prakasanee, Mahal Karyyalaya, Khurda-752055. Dt. Puri (Orissa).

PRICE : RUPEES TWELVE ONLY.
RUPEES FOURTEEN ONLY. ( BINDING )

# "ଅନ୍ତିମ ପର୍ବ"ର ଅନ୍ତିମ ଜିଜ୍ଞାସା

'ଅନ୍ତିମ ପର୍ବ' ମାନବିକତାର ସଭ୍ୟତା ଆଜି ସଂସ୍କୃତିର ସଙ୍କଟରେ କାହାଣୀ । ସମଗ୍ର ମାନବ ସମାଜ ଆଜି ପରିଣତ ହୋଇଛି ପରସ୍ପର ଯୁଦ୍ଧମାନ ନବୀନ ଏକ ଯଦୁବଂଶରେ । ଏମାନଙ୍କ ସଂଗ୍ରାମରେ ସବୁ କିଛି ଆଜି ଭାଙ୍ଗି ପଡ଼ୁଛି । ମାନବିକ ମୂଲ୍ୟବୋଧ ବିପନ୍ନ । ତୃତୀୟ ଦେଶଗୁଡ଼ିକର ମଣିଷ ଆଜି ଶୋଷଣରେ ରିକ୍ତ । ଅପରିସୀମ ଦାରିଦ୍ର୍ୟ ଏବଂ କ୍ଷୁଧାରେ ସେମାନଙ୍କର ଅସ୍ତିତ୍ୱ ବିଧ୍ୱସ୍ତ । ଅବଶ୍ୟ ମଣିଷ ଚିରଦିନ ନିଜର ସମୟକୁ ସଙ୍କଟର ସମୟ ବୋଲି ଭାବି ଆସିଛି । ଭାବିଛି, ତାହାର ଜୀବନରେ ସବୁଜ ଫସଲକୁ କେବଳ ନଷ୍ଟ କରିଗଲେ ଅସଂଖ୍ୟ କ୍ଷୁଧାର୍ତ୍ତ ପଙ୍ଗପାଳ । ଶେଷରେ ସିଦ୍ଧାନ୍ତ କରିଛି, ଏଇ ହେଉଛି ତା'ର ନିୟତି, ତା'ର ଭାଗ୍ୟଭବିତବ୍ୟ । ତଥାପି ମଣିଷ ସ୍ଥିର ରହିନାହିଁ । ବାରମ୍ବାର ଚିନ୍ତା କରିଛି, ଏହି ସଙ୍କଟ ମଧ୍ୟରୁ ଆତ୍ମରକ୍ଷା କରିବାପାଇଁ । ସାହିତ୍ୟରେ, ଦର୍ଶନରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ଦେଖିବାକୁ ମିଳିବ ।

'ଅନ୍ତିମ ପର୍ବ' ସଙ୍କଟ ମୁକ୍ତିର ଏକ ନାଟ୍ୟିକ ଅନ୍ୱେଷଣ ସମ୍ବେଦନଶୀଳ ନାଟ୍ୟକାର ରବୀନ୍ଦ୍ର ନାଥ ଦାସଙ୍କ ଦ୍ୱାରା । ମହାଭାରତର ଅନ୍ୟତମ ଚରିତ୍ର ସୁଭଦ୍ରା ତନୟ ବୀର ଅଭିମନ୍ୟୁକୁ କେନ୍ଦ୍ରରେ ରଖି ନାଟ୍ୟକାର "ସାମ୍ପ୍ରତିକ ଯୁଗର ଦ୍ୱନ୍ଦ, ହତାଶା, ଗ୍ଲାନି ଭିତରେ ଯେଉଁ କେତୋଟି ଚରିତ୍ର ଜୀବନର ନୂତନ ସଂଜ୍ଞା ଖୋଜି ମିଥ୍ୟାକୁ ଚରମ ସତ୍ୟ ମଣି ପରିଶେଷରେ ପରାଜୟ ବରଣ କରିଛନ୍ତି" ସେଇମାନଙ୍କୁ ନେଇ ଆଜିର ମଣିଷର ଏକ ଅଦ୍‌ଭୁତ ଓ ଅଦୃଶ୍ୟ ନିବିଡ଼ ସମ୍ପର୍କ ଖୋଜିଛନ୍ତି । କହିବା ବାହୁଲ୍ୟ ଯେ, ଏଇ ଅନ୍ୱେଷଣ ଭିତରେ ନାଟ୍ୟକାର ଦେଖାଇବାକୁ ଚାହିଁଛନ୍ତି, ମୂଲ୍ୟବୋଧର ଚରମ ଅବକ୍ଷୟ ସହିତ ପ୍ରାପ୍ତି ଓ ନିରାଶାର ମାନସିକ ସଙ୍କଟର ଯନ୍ତ୍ରଣା ଜର୍ଜ୍ଜର ରୂପଟିକୁ । ଏଥିରୁ ମାନବ ସମାଜକୁ ରକ୍ଷା କରିବାକୁ ଯାଇ 'କେଉଁ' ଏକ ଶୂନ୍ୟ ଆକାଶରେ ନକ୍ଷତ୍ରଟିଏ ହୋଇ ଅଭିମନ୍ୟୁ ତା'ର କ୍ଷୀଣ ଆଲୋକରେ ଆଲୋକିତ କରୁଥିବ' କେବଳ ହସ୍ତିନାକୁ ନୁହେଁ—ସମଗ୍ର ମାନବ ସଭ୍ୟତାକୁ ।

'ଅନ୍ତିମ ପର୍ବ' କେବଳ ମାତ୍ର ମହାକାବ୍ୟ ଯୁଗର ଏକ ନିରସ୍ତ୍ର, ଅସହାୟ କ୍ଷତ୍ରିୟ ଯୁବକର କାହାଣୀ ମାତ୍ର ନୁହେଁ, ଏହାର ଭିତରେ ଝଲସି ଉଠୁଛି, ଆଧୁନିକ ଜୀବନର ଭାବନା, ଅତୀତ ବର୍ତ୍ତମାନର ବାଣୀ ଗ୍ରହଣ କରି ଉଚ୍ଚସ୍ୱର ହୋଇ ଉଠିଛି । ଅଭିମନ୍ୟୁମାନେ ମରି ମଧ୍ୟ ମରନ୍ତି ନାହିଁ କାରଣ ସେମାନେ ଯେ ଚିରନ୍ତନ ବିପ୍ଳବର ବାର୍ତ୍ତା, ଏକ ନୂତନ,

ସମ୍ଭାବନା । ଯେତେବେଳେ ସ୍ବପ୍ନଟିଏ ମଣିଷର ଶରହତାଶା ପ୍ରପୀଡ଼ିତ ମନଭିତରେ ଧକ୍ ଧକ ହୋଇ ଜଳ ଉଠିବ, ସେତିକବେଳେ ସମ୍ଭାବନାର ମନ୍ତ୍ର ଉଚ୍ଚାରଣ କରୁ କରୁ ଜନ୍ମ ନେବେ ଅଭିମନ୍ୟୁ । ତଥାପି ଅଭିମନ୍ୟୁଙ୍କୁ ପ୍ରାଣଦେବାକୁ ପଡ଼ିବ, ସପ୍ତରଥୀଙ୍କ ସମ୍ମିଳିତ ଆକ୍ରମଣରେ, ଚକ୍ରବ୍ୟୂହ ମଧ୍ୟରୁ ସତ୍ୟକୁ ଉଦ୍ଧାର କରିବାକୁ ଯାଇ ଅସହାୟ ଭାବରେ । ସମସ୍ତେ ନୀରବ ରହି ଏ ଦୃଶ୍ୟ ଦେଖିବେ । ପୃଥିବୀରେ ଏମିତି ଗୋଟାଏ କାଳ ଆସେ, ଯେତେବେଳେ ସୁର, ବୀର, ପରାକ୍ରମୀ ସମସ୍ତେ ନୀରବ ହୋଇଯାଆନ୍ତି । ଅର୍ଜୁନମାନେ ସେତେବେଳେ ଥାଆନ୍ତି ଦୂରରେ । ଫଳରେ ଅଭିମନ୍ୟୁଟି ଅସ୍ତ୍ରର ଆଘାତରେ ଭୂପତିତ ହୁଏ । ଅତୀତକୁ ବର୍ତ୍ତମାନର ଆଲୋକରେ ଉଦ୍‌ଭାସିତ କରିବା ଖୁବ୍ କଠିନ ବ୍ୟାପାର । ବଡ଼ ଶିଳ୍ପୀ ହିଁ କେବଳ ଏହା କରିପାରନ୍ତି ମନେହୁଏ ଶ୍ରୀ ଦାସ ଏଥିରେ କୃତିତ୍ୱ ହାସଲ କରିପାରିଛନ୍ତି ।

'ଅନ୍ତିମ ଚକ୍ର' ନାଟକଟିର ଅନେକବର୍ଣ୍ଣ, ଅନେକ ମାତ୍ରା ଓ ଅନେକ ବ୍ୟଞ୍ଜନା । ସବୁକିଛୁର ସମନ୍ୱୟରେ ଗୋଟିଏ ପରିପୂର୍ଣ୍ଣ, ନିଷ୍କମ୍ପ ଶିଳ୍ପ ମୂର୍ତ୍ତି ନିର୍ମିତ ହୋଇଛି । ଏଥିରେ ଅଛି ଗୋଟିଏ ସ୍ଫୁଟୋନ୍ମୁଖ— ସମ୍ଭାବନାମୟ ଉଜ୍ଜ୍ୱଳ ଜୀବନର ପତନର କାହାଣୀ ଇତିହାସ ପୁରାଣରେ ଯାହାର ଅନନ୍ୟ ଆତ୍ମୋତ୍ସର୍ଗର ତୁଳନା ଖୋଜି ପାଇବା କଷ୍ଟକର । ଅଭିମନ୍ୟୁର ଚେତନାର ଦହନ, ଅସ୍ତିତ୍ୱର ସଙ୍କଟ, ହୃଦୟର ରକ୍ତକ୍ଷରଣ କେବଳ ତାହାର ଏକକ ସତ୍ତାର ନହୋଇ ହୋଇଛି ସମଗ୍ର ଅସହାୟ ମାନବ ଜାତିର । ଅଭିମନ୍ୟୁର ଦୁଃଖ ଆଉ ଯନ୍ତ୍ରଣା ଭୋଗ—ତା' ପଛରେ ଅଛି ଏକ ସ୍ୱାର୍ଥପର ସମାଜର ଅନ୍ତଃସାର ଶୂନ୍ୟତା । ରାଜନୀତିର ଚକ୍ରବେହରେ ନିରୀହ ଜନତାର ବଳୀ ପଛରେ ସେଇ ଏକମାତ୍ର କାରଣ ଅଭିମନ୍ୟୁ ଏକ ବିଷାଦଗ୍ରସ୍ତ ଅସ୍ମିତାର ଅନିଶ୍ଚିତ ସମୟର ପ୍ରତିଭୂ-ଠିକ୍ ଆଜିର ସମାଜ ଭଳି ଯାହା ଆଜିରେ ଚନ୍ଦ୍ରମା ହେଉଛୁପ୍ତ-ତୃଷ୍ଣମଣ୍ଡଳ ନିଃସ୍ୱ-କୁହ୍ନୁଡ଼ିର ବର୍ଣ୍ଣିକା, ଯାହାର ପରିମଣ୍ଡଳରେ ଅନ୍ଧକାର ଏକ ନିଶ୍ଛିଦ୍ର ମେଘଖଣ୍ଡ ହୋଇ ଝୁଲିରହିଛି । ଇତିହାସରେ ତା'ର ଆସ୍ଥା ନାହିଁ । ଅନାଗତ ଆସନ୍ନା କାଳ ତା' ପାଇଁ ଅନାକାଙ୍କ୍ଷିତ, ଅତୀତ ବିସ୍ମୃତି ଗର୍ଭରେ କେବଳ ମାତ୍ର ଉଜ୍ଜ୍ୱଳ ଭବିଷ୍ୟତର ନୂଆ ସମ୍ଭାବନା ନେଇ ତା ଆଗରେ ଉଭା ବର୍ତ୍ତମାନ । ସଙ୍କଟ ଗ୍ରସ୍ତ ସମାଜକୁ ଉତ୍ତରଣର ମାର୍ଗ ଦେଖାଇବା ପାଇଁ ଅଭିମନ୍ୟୁର ଜନ୍ମ, ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ ଜଣାଇବା

ପାଇଁ ସେ ଏକ ବିପ୍ଳବୀ ଅଗ୍ନିଶିଖା । ଗୋଟିଏ ଦୁର୍ବଳତା ତାହାର ଚରିତ୍ରର ସମସ୍ତ ଶୁଭଚିନ୍ତାକୁ ଢ଼ାଙ୍କିଦେଇଛି । ନିଜ ଶକ୍ତି ଆଉ ସାମର୍ଥ୍ୟ ଉପରେ ତାହାର ପ୍ରଚଣ୍ଡ ଆସ୍ଥା । ସୂର୍ଯ୍ୟୋଦୟର ସ୍ୱପ୍ନ ଦେଖୁ ଦେଖୁ ତାହା ମନରେ ସୃଷ୍ଟି ହୋଇଛି ପ୍ରଚଣ୍ଡ ଅହଙ୍କାର, ଯାହାର ମୂଳ ନିହିତ ତା'ର ବିଶ୍ରୁତ କୁଳ, ଆଉ ପ୍ରଚଣ୍ଡ ଶକ୍ତି ଭିତରେ । ଅଭିମନ୍ୟୁ ଏକ ବେଗବାନ୍ ଅଶ୍ୱ, ଯାହାର ଅନିୟନ୍ତ୍ରିତ ଗତି, ତାକୁ ଧ୍ୱଂସଆଡ଼କୁ ଟାଣି ନେଇଛି । ଠିକ୍ ଆଜିର ମଣିଷଜାତି, ଯେମିତି ଆସନ୍ତାକାଲିର ସ୍ୱପ୍ନ ଦେଖୁ ଦେଖୁ ସମସ୍ତ ପ୍ରତିଯୋଗୀଙ୍କୁ ପଛରେ ପକାଇଦେଇ, ଆଗକୁ ଦୌଡ଼-ଯିବାକୁ ଚେଷ୍ଟା କରୁ କରୁ ପଥରେ ମୁହଁମାଡ଼ି ପଡ଼ିଯାଇ ସମସ୍ତ ସମ୍ଭାବନାର ଶେଷ ଘଟାଉଛି, ଠିକ୍ ସେମିତି, ଅଭିମନ୍ୟୁ ହେଉଛି ସାମ୍ପ୍ରତିକ ବେଗବାନ୍ ଅସ୍ଥିର ମାନବ ସମାଜ ପାଇଁ ନାଟ୍ୟକାରଙ୍କର ଏକ କରୁଣ ତଥା ନିର୍ମମ ରେଢ଼ାବିମ୍ବ ।

ଆଉ ଏକ ଚରିତ୍ର ସ୍ଥିତିବାଦୀ ବଳଦତ୍ତ ଗୋପୀନାଥ ମହାନ୍ତିଙ୍କ 'ଦାନାପାଣି' ଉପନ୍ୟାସର ଏହି ଚରିତ୍ରର ଆଙ୍ଗିକ ଏଠାରେ ସମ୍ପୂର୍ଣ୍ଣ ନୂତନ । ଜୀବନ ସଂଗ୍ରାମ ବିରୁଦ୍ଧରେ, ରକ୍ତପାତର ବିଭୀଷିକାମୟୀ ଅନ୍ଧକାର ବକ୍ଷରେ ସେ ଏକ ଜାଗ୍ରତପ୍ରହରୀ । ଯେଉଁ ଯୁଦ୍ଧ ଗୋଟିଏ ଜୀବନ ଦେଇପାରିବ ନାହିଁ, ଅଥଚ ଶତଶତ ମୂଲ୍ୟବାନ ଜୀବନ କେବଳ ଗ୍ରାସ କରିଯିବ । କି' ଲାଭ ସେଭଳି ସର୍ବନାଶୀ ସଂଗ୍ରାମରେ ? ବଳଦତ୍ତ ଜାଣେ ସବୁକାଳରେ ରାଜାମାନେ ଆଶାର ବାଣୀ ଶୁଣାଇ ପ୍ରଜାଙ୍କର ଆଶାର ପଦ୍ମବନରେ ଧ୍ୱଂସର ଲୀଳା ସଜନ୍ତି । ରାଜାର ଇଙ୍ଗିତରେ ସେମାନେ କେବଳ ପିତୁଳାଭଳି ନାଚନ୍ତି, ଖେଳନ୍ତି, ବ୍ୟକ୍ତିସତ୍ତାର ଦୁର୍ଲଭ ଅନୁଭୂତିକୁ ଜଳାଞ୍ଜଳି ଦେଇ । ବଳଦତ୍ତ ହେଉଛି ଆମର ଏକ ସମାଜ ଜୀବନର ବିବେକସତ୍ତା-ଏକ ଯନ୍ତ୍ରଣାବିଦ୍ଧ ଆତ୍ମା-ଯେକି ସମାଜ ଜୀବନର ବିବେକ ସତ୍ତାକୁ ସୁପ୍ତ ଅବସ୍ଥାରୁ ଉଠାଇବାପାଇଁ ଦ୍ୱାରେ ଦ୍ୱାରେ ଭିକ୍ଷାଝୁଲି ଧରି ବୁଲେ । ଦୁର୍ଯ୍ୟୋଧନ, ଶକୁନି, ଅର୍ଜ୍ଜୁନ, ଅଭିମନ୍ୟୁ କେହି ତାର କଥାରେ କର୍ଣ୍ଣପାତ କରନ୍ତିନାହିଁ । ତ୍ରସ୍ତ ଆଉ ଶଙ୍କିତ ସମାଜ ଉପରୁ କାପୁରୁଷ ପରି ନିର୍ମମ ସତ୍ୟର ସମ୍ମୁଖୀନ ହେବାପାଇଁ ସାହାସ କରିପାରେ ନାହିଁ । ତଥାପି ବଳଦତ୍ତ ଶେଷପର୍ଯ୍ୟନ୍ତ ନିଜ ମତରେ ଅଟଳ ରୁହେ । ଯୁଦ୍ଧ ବିରୁଦ୍ଧରେ ସଂଗ୍ରାମ ଚଳାଇଯାଏ । ମନରେ ଏକମାତ୍ର ସନ୍ତୋଷ ନେଇ ମୃତ୍ୟୁବରଣ କରେ ଯେ ପ୍ରଜାଟିଏ ହେଲେ ମଧ୍ୟ ସେ ଏ ଯୁଦ୍ଧ ପ୍ରତିବାଦ କରି ଆତ୍ମବଳି ଦେଇଥିଲା । ବଳଦତ୍ତ ହେଉଛି ମାନବିକତାର ଏକ

ଉଜ୍ଜଳଦୀପ୍ତଶିଖା ଅପ୍ରାପ୍ତିର ବେଦନା ଭିତରେ ଯାହାକୁ ଚିରବିଦାୟ ନେବାକୁ ପଡ଼ୁଛି । ଆଜିର ଜୀବନରେ ଶୁଭଚିନ୍ତା, ଶୁଭବୁଦ୍ଧି ଏବଂ ବିବେକ ନାମଧେୟ ଅନାବଶ୍ୟକ ବସ୍ତୁର ଏହାହିଁ ହେଉଛି ନିୟତି । ଏହି ଟ୍ରାଜିକ୍ ଚରିତ୍ରଟି ମନକୁ ଗଭୀରଭାବରେ ଆଲୋଡ଼ିତ କରେ ।

ନାଟକର ଆଙ୍ଗିକ ମଧ୍ୟ ଆକର୍ଷଣୀୟ । ପାରମ୍ପରିକ ଯାତ୍ରାସମ୍ମତ ଆଧୁନିକ ଶିଳ୍ପାଙ୍ଗିକର ମଧୁର ତଥା କଳାତ୍ମକ ସମନ୍ୱୟ ନାଟକକୁ ଦେଇଛି ଏକ ସ୍ୱତନ୍ତ୍ର ଗାମ୍ଭୀର୍ଯ୍ୟ । ପାରମ୍ପରିକ ନାଟକର ସୂତ୍ରଧର ମାଧ୍ୟମରେ ନାଟ୍ୟକାର ଏକ ଅସାମାନ୍ୟ ଜୀବନ ଚିତ୍ର ଅଙ୍କନ କରିଛନ୍ତି । କେତେବେଳେ ତା' ଭିତରେ ଅଛି ସହଜ ସୁଷମା "ତୁମେ ମୋର ହାତ-ଧର କୁମାର । ମୁଁ ତୁମକୁ ଭିନ୍ନ ଏକ ପଥରେ ଅନ୍ୟଏକ ରାଜ୍ୟକୁ ନେଇଯିବି, ଯେଉଁଠି ତୁମେ ତୁମର ସ୍ୱପ୍ନର ନଗରୀକୁ ଫେରିପାଇବ ।" କେଉଁଠି ଅବା ଅଛି ତୀବ୍ର ଜ୍ୱାଳା-ଯେଉଁଠି ଯୁଦ୍ଧରେ ଯୋଗଦେବା ନିମନ୍ତେ ଅଭିମନ୍ୟୁ ଦୃଢ଼ ନିଶ୍ଚୟ ଜାଣି ଉତ୍ତରାର ହା ହା କାର ମାନବିକତାର ବେଳାଭୂମିରେ ନିଷ୍ଫଳ ଭାବରେ ମଥା ପିଟିଛି—ଥରଟିଏ ମହାଭାରତ ଯୁଦ୍ଧ ଆରମ୍ଭ ହୋଇଗଲେ, ଏମିତି ଶହ ଶହ ଉତ୍ତରା ଅସହ୍ୟ ନୀରବ ଯନ୍ତ୍ରଣାକୁ ବୁକୁତଳେ ସାଇତି ରଖି ଶଙ୍କିତ ହୃଦୟରେ ଶହ ଶହ ଅଭିମନ୍ୟୁକୁ ବିଦାୟବେଳେ ଯଦି ସେହି ଯୁଦ୍ଧର ପ୍ରଖର ସ୍ରୋତରେ ଅଭିମନ୍ୟୁ ହଜିଯାଏ, କ'ଣ ଅବଶିଷ୍ଟ ନେଇ ବଞ୍ଚିରହିବ ଉତ୍ତରା ?" କାହାଣୀ କେବେ କେବେ ନାଟକୀୟତାରେ ସମ୍ମୁଜ୍ଜ୍ୱଳ ହୋଇ-ଉଠିଛି । ଗାମ୍ଭୀର୍ଯ୍ୟର ମହିମାରେ ରସାଣିତ ହୋଇଛି ।

'ଅନ୍ତିମପର୍ବ'ର 'ଥିମ୍' ସଂଗୃହୀତ ହୋଇଛି ମହାଭାରତରୁ । ପୁରାବୃତ୍ତ ବା ପ୍ରାଚୀନ କାହାଣୀର ନବାୟନ ଘଟାଇ ନାଟ୍ୟକାର ଏଠାରେ ତାକୁ ଉପସ୍ଥାପିତ କରିଛନ୍ତି, ସମ୍ପୂର୍ଣ୍ଣ ଆଧୁନିକତାର ପରିପ୍ରେକ୍ଷୀରେ । ଏହି ରୀତିକୁ ସମ୍ପ୍ରତି ଆଧୁନିକ ନାଟକରେ ବେଶ୍ ଗୁରୁତ୍ୱ ଦିଆଯାଉଛି । 'ମିଥ୍ ଚେତନା' ଆଧୁନିକ ନାଟକରେ ବୈଚିତ୍ର୍ୟ ତଥା ବର୍ଣ୍ଣାଢ଼୍ୟ ଭାବ ସୃଷ୍ଟି କରିବା ନିମନ୍ତେ ଅଭିପ୍ରେତ। ପୁରାଣ, ଇତିହାସ, କିମ୍ବଦନ୍ତୀ, ଲୋକକଥାରୁ ଜଣାଶୁଣା କଥା ସଂଗ୍ରହ କରି ଅତି ପ୍ରାକୃତିକ, ଅଲୌକିକ ଘଟଣା କିମ୍ବା ଚରିତ୍ର ମାଧ୍ୟମରେ ସାମ୍ପ୍ରତିକତାର ପରିପ୍ରେକ୍ଷୀରେ ଏହାକୁ ରୂପାୟିତ କରିବାକୁ ହୋଇଥାଏ । ମଣିଷକୁ ଚିହ୍ନିବାପାଇଁ, ତା'ର ସମାଜ ଜୀବନକୁ ଭଲଭାବେ ଜାଣିବାପାଇଁ 'ମିଥ୍'ହିଁ ହେଉଛି ସର୍ବଶ୍ରେଷ୍ଠ ମାଧ୍ୟମ । ସେ ଦେଶରେ ଓନୀଲ୍, ମିଲର୍, ଆଲବୀ ପ୍ରଭୃତି ବହୁ ନାଟ୍ୟକାର

ବାଇବେଲ ଗ୍ରୀକ୍ ପୁରାଣ, ଇସ୍‌ପସ୍ ଫେବଲ, କାଣ୍ଟରବରୀ ଟେଲସ ପ୍ରଭୃତିରୁ କାହାଣୀ ସଂଗ୍ରହ କରି ନାଟକମାନ ସୃଷ୍ଟି କରିଛନ୍ତି । ଭାରତରେ ମଧ୍ୟ ଅଷ୍ଟମଦଶରୁ ଏହି ଧାରାର ସମାଦାର ବୃଦ୍ଧି ପାଇଛି । ମୋହନ, ରାକେଶ, ଗିରିଶ କର୍ନାଡ଼, ବାଦଲ ସରକାର ପ୍ରମୁଖ ନାଟ୍ୟକାରମାନେ ଏହି ଧାରାର ନାଟକମାନ ଲେଖିଛନ୍ତି । ନାଟ୍ୟକାର ଦାସ ଇତିପୂର୍ବରୁ କେତୋଟି ପରୀକ୍ଷାଧର୍ମୀ ନାଟକ ଲେଖି ନାଟ୍ୟକାରରୂପେ ପ୍ରତିଷ୍ଠା ପାଇସାରିଛନ୍ତି । ପ୍ରସ୍ତୁତ ନାଟକରେ ଆମର ଐତିହ୍ୟର ଏକ ଚମତ୍କାର ରୂପ ସେ ପ୍ରସ୍ତୁତ କରିପାରିଛନ୍ତି । ଅନୁଭୂତିର ସ୍ନିଗ୍ଧ ଏବଂ ମୋହମୟ ଚିତ୍ରରେ ସଂଳାପଗୁଡ଼ିକ ସିକ୍ତ ଯେହେତୁ ଘଟଣା ଏବଂ ଚରିତ୍ର ସବୁ ମହାଭାରତର ତେଣୁ ଓଜଃ ପୂର୍ଣ୍ଣ ଗମ୍ଭୀର ସଂଳାପ ହିଁ ଚରିତ୍ରମାନଙ୍କ ନିମନ୍ତେ ପରିକଳ୍ପିତ ହୋଇଛି; ତଥା ନାଟକର ଆମୂଳ ଏହି ସ୍ୱରଟି ବଜାୟ ରଖାଯାଇପାରିଛି । ଚରିତ୍ର ରୂପରେ ଏଥିରେ ଧୃତରାଷ୍ଟ୍ର, ଗାନ୍ଧାରୀ ଶକୁନି, ଶ୍ରୀକୃଷ୍ଣ, ଅର୍ଜୁନ, ଅଭିମନ୍ୟୁ ଏବଂ ଉତ୍ତରା ପ୍ରମୁଖ ମହାଭାରତର ପାତ୍ରପାତ୍ରୀ ମାନେହିଁ ଆସିଛନ୍ତି । କୁରୁକ୍ଷେତ୍ର ପ୍ରାଙ୍ଗଣରେ ଅନ୍ୟାୟ ଯୁଦ୍ଧରେ ଅଭିମନ୍ୟୁର ସଂହାରହିଁ ହେଉଛି ଏହି ନାଟକର ଏକମାତ୍ର ଘଟଣା । କିଛି ଶାନ୍ତ ଯୁଦ୍ଧର ସପକ୍ଷରେ ଏବଂ କିଛି ବିପକ୍ଷରେ ଦ୍ୱନ୍ଦ ଯାହାକିଛି, ତେଣୁ ଏହି ଘାଟଣିକ ସଂଘାତକୁ ହିଁ ଆଶ୍ରୟକରି ରୂପାୟିତ ହୋଇଛି । ଗୋଟିଏ ମାତ୍ର ନିର୍ଦ୍ଦିଷ୍ଟ ଭାବକୁ ନେଇ ନାଟକୀୟ ଅଗ୍ରଗତି ବଜାୟରଖିବା ଏକ ଦୁରୂହ ବ୍ୟାପାର । ତେବେ ନାଟ୍ୟକାର ଏଥିରେ ସଫଳ ହୋଇଛନ୍ତି ।

ଏସବୁ ନାଟକରେ କୌତୁକ ରସର ଏକ ପ୍ରତ୍ୟାଶା ଦର୍ଶକମାନେ କରନ୍ତି ତାହାର ଯଥେଷ୍ଟ ସୁଯୋଗ ମଧ୍ୟ ଥିଲା । ମାତ୍ର ନାଟ୍ୟକାର ତାହା ଗ୍ରହଣ କରିନାହାନ୍ତି । ନାଟକରେ କେତେଗୁଡ଼ିଏ ଭାଷାଗତ ତ୍ରୁଟି ରହି-ଯାଇଛି । ଯାହା ନାଟ୍ୟକାର ଭବିଷ୍ୟତରେ ସୁଧାରି ନେବେ ବୋଲି ଆଶା କରାଯାଏ । ଓଡ଼ିଆ ନାଟକ ଯେତେବେଳେ ଗୁରୁତ୍ୱର ସଂକଟରେ ସମ୍ମୁଖୀନ ହୋଇ ନିଜର ସ୍ଥିତି ନିମନ୍ତେ ସଂଗ୍ରାମ ଚଳାଇଯାଉଛି, ସେତେବେଳେ ସମଗ୍ର ମାନବଜାତିର ସଂକଟର ରୂପାୟନରେ ଆବେଗ ପ୍ରବଣ ନାଟ୍ୟକାର ଯେଉଁ ପଦକ୍ଷେପ ଗ୍ରହଣ କରିଛନ୍ତି, ତାହା ନିଶ୍ଚିତ ଭାବରେ ଓଡ଼ିଆ ନାଟକ ପାଇଁ ଏକ ସୁ-ନିର୍ଦ୍ଦିଷ୍ଟ ପଥର ସନ୍ଧାନ ଦେବ । ଓଡ଼ିଆ ନାଟ୍ୟଧାରାରେ 'ଅନ୍ତିମ ପର୍ବ' ଏକ ଉଜ୍ଜ୍ୱଳ ଶିଳ୍ପିତ ସଂଯୋଜନ ।

**ଡକ୍ଟର ହେମନ୍ତ କୁମାର ଦାସ**
ହୀରାମଣି ନିବାସ, ଦେଉଳ ସାହି, କଟକ

# ନାଟ୍ୟକାରର ନିଜସ୍ୱ ସଂଳାପ

ମହାଭାରତର ପୃଷ୍ଠଭୂମିରେ 'ଅନ୍ତିମ ପର୍ବ' ନାଟକର ସର୍ଜନା । ସାଂପ୍ରତିକ ଜୀବନର ମାନସିକ ସଂଘାତ ଓ ବିରୋଧାଭାସକୁ ନେଇ ଏହି ନାଟକର ପରିକଳ୍ପନା । ଏହି ନାଟକର ଦୁଇଟି ମୁଖ୍ୟ ଚରିତ୍ର—ଅଭିମନ୍ୟୁ ଓ ସୂତ୍ରଧର । ଏକ ଏବଂ ଅଭିନ୍ନ । ଗୋଟିଏ ମନର ଦୁଇଟି ଅଭିବ୍ୟକ୍ତି । ଏକ ନିରର୍ଥକ ଆତ୍ମାଭିମାନ ଓ ଅନ୍ଧ ଅହଂକାର ଯୁଗେ ଯୁଗେ ସୁନ୍ଦର ସୃଷ୍ଟିକୁ ଧ୍ୱଂସାଭିମୁଖୀ କରିଛି । ଫଳତଃ କିଛି ନ ବୁଝି ନ ଜାଣି ନିଜର ଅନିଚ୍ଛାସତ୍ତ୍ୱେ ନିରୀହ ସାଧାରଣ ମଣିଷଟିଏ ଅନ୍ୟପାଇଁ କ୍ଷମତାର ଯୂପକାଠିରେ ନିଜକୁ ବିସର୍ଜନ ଦେଇଛି । ତେଣୁ ସୂତ୍ରଧରର ଉତ୍କଣ୍ଠା ଆଜିର ଯନ୍ତ୍ରଣା ଜର୍ଜରିତ ନିପୀଡ଼ିତ ଆତ୍ମାର ଆବେଗମୟ ଅଭିବ୍ୟକ୍ତି । ଫଳତଃ ଅନନ୍ୟୋପାୟ ହୋଇ ସୂତ୍ରଧର ନିଜର ଭୂମିମାରୁ ଓହ୍ଲାଇଆସି ପାଲଟିଛି ନାଟକର ଚରିତ୍ରଟିଏ ।

ଜୀବନର ନୂତନ ସତ୍ୟକୁ ଉନ୍ମୋଚନ କରିବା ନିମନ୍ତେ ଅନ୍ତଃହୀନ ଅନୁସନ୍ଧିତ୍ସା ଏବେବି ଅବ୍ୟାହତ ରହିଛି । ସେହିପରି ଏକ ଚେତନାର ପୃଷ୍ଠଭୂମିରେ ଅଭିମନ୍ୟୁର ସୃଷ୍ଟି ଓ ବିଲୟ । ଅଭିମନ୍ୟୁର ମୃତ୍ୟୁରେ ଚିନ୍ତାର ଏକ ନବ ଉନ୍ମେଷ ଘଟିଛି, ଏକ ନବ ଉତ୍ତରଣ ପ୍ରକାଶଲାଭ କରିଛି ।

ଆଜିର ନାଟକ ଏକ ଚରମ ସଙ୍କଟର ସମ୍ମୁଖୀନ । ନବନାଟ୍ୟ ଆନ୍ଦୋଳନର ଧାରା ପ୍ରାୟ ସ୍ତିମିତ । ତେଣୁ ଦୀର୍ଘ ବାରବର୍ଷର ବ୍ୟବଧାନ ପରେ ଏହି ନାଟକର ଆତ୍ମପ୍ରକାଶ, କେତେଦୂର ସମୀଚୀନ, ତାହା ମୋର ମନକୁ ଆନ୍ଦୋଳିତ କରିଛି । ବ୍ୟବସାୟିକ ରଙ୍ଗମଞ୍ଚର ବିଲୟ ଘଟିଲା ବେଳେ ମୁଷ୍ଟିମେୟ ସୌଖୀନ ସଂସ୍ଥା ବ୍ୟତୀତ ଅନ୍ୟମାନେ ପରୀକ୍ଷାଧର୍ମୀ ନାଟକ ପ୍ରଯୋଜନା ପ୍ରତି ବୀତସ୍ପୃହ । ଚଳଚ୍ଚିତ୍ରର ବ୍ୟବସାୟିକ ଦୃଷ୍ଟିଭଙ୍ଗୀ ତଥା ଦୂରଦର୍ଶନର ଅବାଧ ଗୃହପ୍ରବେଶ ନାଟକ ରଚନା ତଥା ପ୍ରଯୋଜନା କ୍ଷେତ୍ରରେ ଅନ୍ତରାୟ ହୋଇ ଦେଖାଦେଇଛି ।

ନାଟକ ସମ୍ପର୍କରେ ଅନେକ ମତବାଦ ଥିଲେ ମଧ୍ୟ ନାଟକକୁ ସ୍ଥୂଳଦୃଷ୍ଟିରେ ତିନିଶ୍ରେଣୀରେ ବିଭକ୍ତ କରାଯାଇପାରେ । କେତେକ ନାଟକ

କେବଳ ଆନନ୍ଦ ପ୍ରଦାନ ପାଇଁ ଉଦ୍ଦିଷ୍ଟ । ଏହାର ସାହିତ୍ୟିକ ମୂଲ୍ୟ ପ୍ରାୟ ଗୌଣ । ଅନେକ ଗାଁ ଗହଳର ଯାତ୍ରା ଏହି ଶ୍ରେଣୀୟ । ପୁନଶ୍ଚ କେତେକ ନାଟକ ଦର୍ଶକଙ୍କୁ ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ମାନସିକ ତଥା ବୌଦ୍ଧିକ ବିକାଶରେ ସାହାଯ୍ୟ କରେ । ଏହି ନାଟକଗୁଡ଼ିକ ତତ୍କାଳୀନ ସାମାଜିକ ଜୀବନର ପ୍ରତିଫଳନ । ଅନ୍ନପୂର୍ଣ୍ଣା, ଜନତା ରଙ୍ଗମଞ୍ଚରେ ଅଭିନୀତ ଏହି ଶ୍ରେଣୀୟ ନାଟକଗୁଡ଼ିକର ଅବଦାନ ଓଡ଼ିଶାର ନାଟ୍ୟସାହିତ୍ୟର ବିକାଶ ତଥା ଲୋକପ୍ରିୟତା ପାଇଁ ସ୍ମରଣୀୟ । ଅନ୍ୟ କେତେକ ନାଟ୍ୟକାର ତଥା ନାଟ୍ୟ ସମାଲୋଚକ ସମ୍ମୋହନ ସୃଷ୍ଟି ପାଇଁ ଆବେଗ ଅବତାରଣା ଘୋର ବିରୋଧୀ । ଏ ସମ୍ପର୍କରେ ବକ୍ତବ୍ୟ ହେଲା ଯୁକ୍ତିର ଅବତାରଣାଦ୍ୱାରା ମଣିଷ ମନର ନିବୁଜ କୋଠରୀର ସବୁ ଝରକା ଖୋଲିଯାଏ । ଏହି ନାଟକଗୁଡ଼ିକ ସଙ୍କେତଧର୍ମୀ, ଏଠାରେ କାହାଣୀ ଗୌଣ କାହାଣୀ ଭିତରେ ଅନ୍ତର୍ନିହିତ କାହାଣୀ ମୁଖ୍ୟ । ଏହି ନାଟକ ପାଇଁ ହୃଦୟ ଦେଇ ଭାବିବାକୁ ପଡ଼େ – ମନଦେଇ ଅନୁଭବ କରିବାକୁ ହୁଏ । ଏ ସମ୍ପର୍କରେ ମତପ୍ରକାଶ ପାଇଛି । ଯୁକ୍ତିବୋଧ ପ୍ରବଳ ହେଲେ ତାହା ଆବେଗରେ ରୂପାନ୍ତରିତ ହୁଏ । ସେତେବେଳେ ନାଟ୍ୟକାରର ମୁଖ୍ୟ କର୍ତ୍ତବ୍ୟ ହେଲା, ସେ ନିଜେ ଆବେଗର ବଶବର୍ତ୍ତୀ ନ ହୋଇ ଆବେଗକୁ ନିଜର ବଶବର୍ତ୍ତୀ କରିବା ଦିଗରେ ଚେଷ୍ଟିତ ହେବା । ବୁଦ୍ଧି ଓ ବିବେକ ନେଇ ଆବେଗକୁ ବିଶ୍ଳେଷଣ କଲେ ସାର୍ଥକ ନାଟକ ଜନ୍ମଲଭ କରେ । ତେଣୁ ନାଟକର ଶେଷ ଯବନିକା ପତନ ହେଲାବେଳେ ହିଁ ଦର୍ଶକ ମନର ଯବନିକା ଉତ୍ତୋଳିତ ହୁଏ । ରଙ୍ଗମଞ୍ଚରେ ନାଟକର ସମାପ୍ତି ପରେ ତାର ମନରଙ୍ଗ ମଞ୍ଚରେ ସେହି ନାଟକ ପୃଥକ ଏକ ରୂପନେଇ ଅଭିନୀତ ହୁଏ । 'ଅକ୍ରମ ପର୍ବ' ଯଦି ନାଟକର ଏହି ଧର୍ମ ପୂରଣ କରିବା ଦିଗରେ ସମର୍ଥ ହୁଏ, ତା'ହେଲେ ବିଳମ୍ବ ହେଲେ ମଧ୍ୟ ଏହି ନାଟକର ମୁଦ୍ରିତ ଜୀବନ୍ୟାସ ଯେ ଯଥାର୍ଥ, ଏ ସମ୍ପର୍କରେ ମୁଁ ନିଃସନ୍ଦେହ ।

ଏହି ନାଟକର ପ୍ରକାଶନ ଅବସରରେ ଦୀର୍ଘ ଏଗାରବର୍ଷ ଧରି ଏ ନାଟକର ପାଣ୍ଡୁଲିପିକୁ ଯତ୍ନରେ ସାଇତି ରଖିଥିବା ମୋର ଝିଅ 'ପିଙ୍କୁ' ଓ ଓଡ଼ିଆ ପଢ଼ିନପାରିଲେ ମଧ୍ୟ ଏହାର ପ୍ରକାଶନରେ ଉତ୍ଫୁଲ୍ଲିତ ହେଉଥିବା ମୋର ପୁଅ 'ପପୁନ' ନିଶ୍ଚିତଭାବରେ ଧନ୍ୟବାଦାର୍ହ ।

ତା ୧୩-୭-୯୩ **ରବୀନ୍ଦ୍ରନାଥ ଦାସ**

## ନାଟକ— ଅନ୍ତିମ ପର୍ବ

❊ ସଙ୍ଗୀତ ନାଟକ ଏକାଡେ଼ମୀର ଏକାଦଶତମ ନାଟକ ସମାରୋହରେ ମୁକ୍ତାଙ୍ଗନରେ ଭୁବନେଶ୍ବରସ୍ଥ ପ୍ରଦର୍ଶନୀ ପ୍ରାଙ୍ଗଣରେ ଅଭିନୀତ ।

❊ ପ୍ରଥମ ଅଭିନୟ—ମାର୍ଚ୍ଚ ୨୫ ତାରିଖ ୧୯୭୯ ।

❊ କଟକ ଆକାଶବାଣୀ କେନ୍ଦ୍ରରୁ ଏହାର ବେତାର ନାଟ୍ୟରୂପ ପ୍ରସାରିତ ।

| ଚରିତ୍ର | ନାରୀ ଚରିତ୍ର |
|---|---|
| ଦୁର୍ଯ୍ୟୋଧନ | ଗାନ୍ଧାରୀ |
| ଶ୍ରୀକୃଷ୍ଣ | ଉତ୍ତରା |
| ଅର୍ଜୁନ | |
| ଶକୁନି | |
| ଜୟଦ୍ରଥ | |
| ଧୃତରାଷ୍ଟ୍ର | |
| ସଞ୍ଜୟ | |
| ଅଭିମନ୍ୟୁ | |
| ଓ | |
| ସୂତ୍ରଧର / ବଳଦତ୍ତ | |

# ପ୍ରଥମ ଅଙ୍କ

## ସୂଚନା

[ ସାଂପ୍ରତିକ ପରିପ୍ରେକ୍ଷୀରେ ଅତୀତର ପୃଷ୍ଠଭୂମି ଉପରେ ଏହି ନାଟକର ଅବତାରଣା । ମହାଭାରତର ଅନ୍ୟତମ ମହାନ ଚରିତ ଅଭିମନ୍ୟୁଙ୍କୁ ଭିତ୍ତିକରି ଏହି ନାଟକ ରଚିତ ହୋଇଥିଲେ ମଧ୍ୟ ପୁରାଣ ଯୁଗର ସେହି ଅଶ୍ରୁଳ କାହାଣୀକୁ ଭିନ୍ନ ଏକ ଶୈଳୀରେ ମଞ୍ଚାୟନ କରିବା ନିମନ୍ତେ ଏହା ଉଦ୍ଦିଷ୍ଟ ନୁହେଁ । ସାଂପ୍ରତିକ ଜୀବନର ଦ୍ୱନ୍ଦ୍ୱ, ହତାଶା, ଗ୍ଲାନି ଭିତରେ ଯେଉଁ କେତୋଟି ଚରିତ୍ର ଜୀବନର ନୂତନ ସଂଜ୍ଞା ଖୋଜି ଖୋଜି ମିଥ୍ୟାକୁ ଚରମ ସତ୍ୟ ମଣି ପରିଶେଷରେ ପରାଜୟ ସ୍ୱୀକାର କରିଛନ୍ତି, ମହାଭାରତ ସେକାଳର ସେହି ଚରିତମାନଙ୍କ ସହ ଆଜିର ମଣିଷର ଯେମିତି ଏକ ଅଦ୍ଭୁତ ଓ ଅଦୃଶ୍ୟ ନିବିଡ଼ ସମ୍ପର୍କ ରହିଛି । ଫଳତଃ ଏକ ଅଯୌକ୍ତିକ ସଂଘର୍ଷ ଭିତରେ ପ୍ରତି ମୁହୂର୍ତ୍ତରେ ମାନବିକ ମୂଲ୍ୟବୋଧର ଯେଉଁ ଚରମ ଅବକ୍ଷୟ ସଙ୍ଗଠିତ ହେଉଛି, ପ୍ରାପ୍ତି ଓ ନିରାଶାର ମାନସିକ ସଙ୍କଟ ଭିତରେ ଆଜିର ଜୀବନ ଯେପରି ଯନ୍ତ୍ରଣାମୟ ହୋଇଉଠୁଛି, ତାହାର ଏକ ମାନଚିତ୍ର ଡିଅଁରି କରିବାପାଇଁ ଏହି ନାଟକ ମାଧ୍ୟମରେ କ୍ଷୀଣ ପ୍ରୟାସ କରାଯାଇଛି ଯାହା । ଏହି ନାଟକର ମଞ୍ଚାୟନ ପାଇଁ ବିଶେଷ ପ୍ରସ୍ତୁତି ଓ ସେଟ୍ ଇତ୍ୟାଦି ଅନାବଶ୍ୟକ । ବରଂ ମୁକ୍ତ ମଞ୍ଚରେ ଏହାର ମୁକ୍ତାଭିନୟ ଏକାନ୍ତ ସ୍ୱାଗତଯୋଗ୍ୟ । ଆଲୋକ ସମ୍ପାତ ଦ୍ୱାରା ଦୃଶ୍ୟ ପରିବର୍ତ୍ତନର ସୂଚନା ପ୍ରଦାନ କରାଯାଇ-ପାରିବ । ମଞ୍ଚଉପରେ କେତୋଟି ଚେୟାର ରଖାଯାଇ ନାଟକଟିକୁ ସାବଲୀଳଭାବରେ ଅଭିନୟ କରାଯିବା ବାଞ୍ଛନୀୟ । ସାମଗ୍ରିକଭାବରେ ସେଟ୍‌ଟି ପ୍ରତୀକଧର୍ମୀ ହେବା ଉଚିତ ।

ଅଭିନୟ ପରିପ୍ରେକ୍ଷୀରେ ସମୁଦାୟ ନାଟକଟିକୁ ମାତ୍ର ଦୁଇଟି ଅଙ୍କ ଓ ପ୍ରତ୍ୟେକ ଅଙ୍କକୁ ମାତ୍ର ଗୋଟିଏ ଦୃଶ୍ୟରେ ବିଭକ୍ତ କରାଯାଇ-ପାରେ, ମାତ୍ର ଚରିତ୍ର ଓ ଦର୍ଶକମାନଙ୍କ ମଧ୍ୟରେ ଅନ୍ତରଙ୍ଗ ସମ୍ପର୍କ ସ୍ଥାପନ ପାଇଁ ନାଟକଟିକୁ ଅଧିକ କେତୋଟି ଦୃଶ୍ୟରେ ବିଭକ୍ତିକରଣ କରାଯାଇଛି ।

ନାଟକଟିର ଅଭ୍ୟୁଦୟ ଏହିପରି—ମଞ୍ଚଉପରେ କେତେଗୁଡ଼ିଏ ଚରିତ୍ର ଜୀବନବ୍ୟାପୀ ସଂଗ୍ରାମ କରି କରି ଶେଷରେ କ୍ଳାନ୍ତ; ଶ୍ରାନ୍ତ ହୋଇ ଗଭୀର ନିଦ୍ରାକୋଳରେ ଆଶ୍ରୟ ନେଇଛନ୍ତି । ସେମାନଙ୍କ ମଧ୍ୟରେ ନାରୀ ଚରିତ୍ର ଦୁଇଟି । ଅନ୍ୟ ଏକ ଚରିତ୍ର ସୂତ୍ରଧର ଅନ୍ୟମାନଙ୍କ ପରି ଆଦୌ ଶୋଇପାରୁନାହାଁନ୍ତି । ସେ ମାନସିକ ସଂଘାତରେ ଯନ୍ତ୍ରଣାକାତର । ସେ ଯେମିତି ଏକ ଭିନ୍ନ ଦୃଶ୍ୟର ଦ୍ରଷ୍ଟା ଥିଲେ । ସେ ହଠାତ୍ ଉଠିପଡ଼ି ଚିତ୍କାର କଲେ ।

ସୂତ୍ରଧର : ଓ, ମୁଁ ମରିଯାଇଥିଲି । ମହାଭାରତ ଯୁଦ୍ଧରେ ବିନା ଅସ୍ତ୍ରରେ ଲଢ଼େଇ କଲାବେଳେ ମୋର ମୃତ୍ୟୁ ହୋଇଥିଲା ଅଥଚ ମୁଁ ବଞ୍ଚିଲି କିପରି ? ମନେହେଉଛି ମୁଁ ଯେମିତି ସହସ୍ର ସହସ୍ର ବର୍ଷଧରି ଗଭୀର ନିଦ୍ରାମଗ୍ନ ଥିଲି । ମୃତ୍ୟୁ କ'ଣ ନିଦ୍ରା ପରି କୋମଳ ? ସେ କ'ଣ ଶେଷ ଆଶ୍ରୟଦାତା ? ସବୁ ଯନ୍ତ୍ରଣା, ଦୁଃଖ ଶୋକକୁ ଭୁଲିଯିବାପାଇଁ ମୃତ୍ୟୁ ଏକ ସୁରକ୍ଷିତ ସମ୍ଭାବନା ?

କିନ୍ତୁ ମୁଁ ମରିବି କିପରି ? ମୋର ଶେଷ ପ୍ରଶ୍ନ ଏବେବି ଅମୀମାଂସିତ ରହିଯାଇଛି । ( ସମସ୍ତ ଚରିତ୍ରମାନଙ୍କୁ ଗଭୀର ଭାବରେ ନିରୀକ୍ଷଣ କରି ) ତୁମେମାନେ ସମସ୍ତେ ନିଦ୍ରା ପରିହାର କର । ନୂତନ ପ୍ରଭାତକୁ ସମ୍ବର୍ଦ୍ଧନା ଜଣାଅ । କେତେ ଯୁଗପାଇଁ ଏମିତି ସ୍ୱପ୍ନ ଦେଖି ଦେଖି ମୋହଗ୍ରସ୍ତ ନିଦଭିତରେ ହଜିଯାଇ-ଥିବ ? (ଚରିତ୍ର ସବୁ ଅଙ୍ଗଭଙ୍ଗୀ କଲେ) ତୁମେମାନେ ଉଠିପଡ଼ । ପୂର୍ବାଶା ରକ୍ତରଞ୍ଜିତ । ସଂଶୟର ଅନ୍ଧକାର ତିରୋହିତ ହୋଇଛି । କୁହ, ଉତ୍ତର ଦିଅ । କ'ଣ ପାଇଁ ତୁମେସବୁ ଅର୍ଥହୀନ ସଂଗ୍ରାମ ଭିତରେ ଅନନ୍ତ ଯୁଗ ଧରି ମଜ୍ଜିଯାଇଥିଲ ? କ'ଣ

ଏହାର ଶେଷ ଘଟିଛି ? ନା, ତୁମେମାନେ କେହି ମୁଖଖୋଲି ହେଲି ନିଷ୍ଠୁର ଉତ୍ତରଟିଏ ଉଚ୍ଚାରଣ କରିପାରିବ ନାହିଁ । ଏ ଲଢ଼େଇ ଏକ ହୃଦୟହୀନ ତସ୍କର ପରି ଆମର ସବୁ ସର୍ବସ୍ୱ ଲୁଣ୍ଠି ନେଇଛି, ତଥାପି ତୁମେମାନେ ନିରୁତ୍ତର ? ଶେଷଦୃଶ୍ୟଟିଏ ଅନେକ ଆଗରୁ କହିସାରି ଅକ୍ରମ ବିଶ୍ରାମ ନେଇଛି । ତୁମେସବୁ ଥରେମାତ୍ର ସେହିଦିନର କଥାଟିଏ ଚିନ୍ତା କରିଦେଲେ ଅତୀତର ସବୁ ସୃଷ୍ଟି ଉନ୍ମୋଚନ ହୋଇଯିବ । ଇତିହାସ ଜୀବନ୍ୟାସ ପାଇ ବର୍ତ୍ତମାନ ପାଲଟିଯିବ । ସେଦିନ ଓ ଆଜ, ଅତୀତ ଓ ବର୍ତ୍ତମାନ, କେଉଁ ଏକ ଶୂନ୍ୟ ଦିଗନ୍ତପରି ଏକାକାର ହୋଇଯିବ । (ଚରିତ୍ର-ଗୁଡ଼ିକ ଅଙ୍ଗଭଙ୍ଗୀ କରି ହଲଚଲ ହେଲେ । ସେମାନେ ଉଠିବାକୁ ଚେଷ୍ଟାକରି ଉଠିପାରୁ ନ ଥିଲେ । ସେମାନେ ଶକ୍ତିହୀନ ଓ ନିସ୍ତେଜ । ଶେଷରେ ସେମାନେ ଅତି କଷ୍ଟରେ ଠିଆହୋଇ ଗୋଟିଏ ପରେ ଗୋଟିଏ କ୍ଲାନ୍ତ ପାଦରେ ମଞ୍ଚରୁ ଚାଲିଯିବାକୁ ଆରମ୍ଭ କଲେ । ମଞ୍ଚଉପରେ ମୋଟରେ ନଅଟି ଚରିତ୍ର । ସେମାନଙ୍କୁ ଆମେ ଶ୍ରୀକୃଷ୍ଣ, ଅର୍ଜ୍ଜୁନ, ଦୁର୍ଯ୍ୟୋଧନ, ଶକୁନି, ଧୃତରାଷ୍ଟ୍ର, ସଞ୍ଜୟ, ଜୟଦ୍ରଥ, ଗାନ୍ଧାରୀ ଓ ଉତ୍ତରା ନାମରେ ଅଭିହିତ କରିବା । ଚରିତ୍ରଗୁଡ଼ିକ କ୍ରମାନ୍ୱୟରେ ଅଙ୍ଗଭଙ୍ଗୀ କରି ମଞ୍ଚଉପରୁ ବିଦାୟ ନେଲେ । ଶେଷରେ ଯେଉଁ ଦୁଇଟି ଚରିତ୍ର ମଞ୍ଚଉପରୁ ଶେଷବିଦାୟ ନେବାକୁ ପ୍ରସ୍ତୁତ ହେଉଥିଲେ ସୂତ୍ରଧର ସେମାନଙ୍କୁ ନିବର୍ତ୍ତାଇ କହିବାକୁ ଆରମ୍ଭ କଲେ । )

ସୂତ୍ରଧର : ନା ନା, ତୁମଦୁହିଁଙ୍କୁ ମୁଁ ବିଦାୟ ଦେଇପାରିବ ନାହିଁ । ତୁମର ଆଗମନ ନାହିଁ କି ପ୍ରସ୍ଥାନ ନାହିଁ । ଅନନ୍ତକାଳ ଧରି ତୁମର ବ୍ୟାପ୍ତି । ତୁମେ ଦୁହେଁ ଅନ୍ତର୍ହିତ ହେଲେ, ଏ ନାଟକର ଶେଷ ଯବନିକା ପତନ ହେବ । ତୁମେ ଦୁହେଁ ଏ ସୃଷ୍ଟିର କର୍ତ୍ତା ଓ ନିୟନ୍ତା । ତୁମଦୁହିଁଙ୍କ ବ୍ୟତୀତ କୌଣସି ନାଟକର ଅଭିନୟ ସମ୍ପୂର୍ଣ୍ଣ ଅସମ୍ଭବ । ଆଉ ତୁମେ ( କୃଷ୍ଣଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ) ତୁମେ ସକଳ କୀର୍ତ୍ତିର ଆଧାର । ସେଇଥିପାଇଁ ତୁମେ

ଅସଂଖ୍ୟ ନାମରେ ନାମିତ । ଆଉ ମୋପାଇଁ ତୁମେ ମହାଭାରତର ମହାନାୟକ କୃଷ୍ଣ । ଆଉ ସିଏ—ସିଏ ତୁମର ସଖା, ସୋଦର, ସୁହୃଦ ପାର୍ଥ, ଯାହାକୁ ନେଇ ତୁମେ ପ୍ରତି ମୁହୂର୍ତ୍ତରେ ଭଙ୍ଗା ଗଢ଼ାର ଖେଳ ଆରମ୍ଭ କରିଦିଅ—ତୁମେ ଦୁହେଁ ଥରଟିଏ ପାଇଁ ଗୋଟିଏ ମଞ୍ଚରେ ଆସୀନ ହୋଇଗଲେ କମ୍ବଦନ୍ତୀ ଇତିହାସରୁ ଓହ୍ଲାଇ ଆସି ବର୍ତ୍ତମାନର ଚରିତ୍ର ଭିତରେ ହଜଯାଅ, ତୁମରି ଇଙ୍ଗିତରେ ପୁଣିଥରେ ସର୍ଜ୍ଜନା ହୁଏ ଅନ୍ୟ ଏକ ମହାଭାରତର ଆଉ ଏକ କୁରୁକ୍ଷେତ୍ର । ଆଉ କିଛି ନ ଜାଣି ନ ବୁଝି ଆମେ ନିର୍ବୋଧସବୁ ସେହି ଅର୍ଥହୀନ ସଂଗ୍ରାମରେ ମାତିଉଠୁ । ନା—ନା, ତୁମ ଦୁହିଁଙ୍କୁ ମୁଁ ବିଦାୟ ଦେଇପାରିବି ନାହିଁ ।

( ଆଲୋକ ପଡ଼ିଲା ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କ ମୁହଁରେ । ଅର୍ଜ୍ଜୁନ ବିଷାଦଜର୍ଜ୍ଜରିତ । କୃଷ୍ଣ—ସେ ଦୃଢ଼ଭାବରେ ଛିଡ଼ା ହେବାକୁ ଅକ୍ଷମ । ଆଶ୍ୱାସନା ଭଙ୍ଗୀରେ କୃଷ୍ଣ ଅର୍ଜ୍ଜୁନଙ୍କ ନିକଟକୁ ଅଗ୍ରସର ହେଲେ । ସୂତ୍ରଧର ମଞ୍ଚର ଅପରପାର୍ଶ୍ୱରେ ନିର୍ବିକଳ୍ପ ମୂର୍ତ୍ତିଟିଏ ପରି ଠିଆହୋଇ ରହିଲେ । ଅଭିନୟର ସ୍ୱଚ୍ଛନ୍ଦତା ପାଇଁ ଆମେ ଏହାକୁ ପ୍ରଥମ ଦୃଶ୍ୟଭାବରେ ନାମିତ କରିବା । ) ]



## ପ୍ରଥମ ଦୃଶ୍ୟ

( ହସ୍ତୀନା ନଗରୀ । ମଞ୍ଚଉପରେ ଶ୍ରୀକୃଷ୍ଣ ଓ ବିଷାଦଗ୍ରସ୍ତ ଅର୍ଜୁନ । ଦୂରରୁ ଶୁଭୁଥିଲା, "ଜୟ କୁରୁପତି ଦୁର୍ଯ୍ୟୋଧନଙ୍କ ଜୟ" )

କୃଷ୍ଣ : ଶୁଣ ପାର୍ଥ, କୌରବ ଶିବିରରୁ କପଟ ବିଜୟଉଲ୍ଲାସ ଧ୍ୱନି ଭାସି ଆସୁଛି । ଚତୁର୍ଦ୍ଦିଗରେ ଆନନ୍ଦମୁଖର କୋଳାହଳ । ଆସନ୍ତା-କାଲର ଉଜ୍ଜ୍ୱଳ ସ୍ୱପ୍ନରେ ସେମାନେ ଆତ୍ମବିଭୋର ।

ଅର୍ଜୁନ : ସଖା, ମୁଁ କ୍ଲାନ୍ତ, ମୁଁ ବିଷାଦଗ୍ରସ୍ତ । ନୈରାଶ୍ୟର ଅବ୍ୟକ୍ତ ଜ୍ୱାଳାରେ ମୁଁ ଜର୍ଜ୍ଜରିତ । ପଦଟିଏ ଆଗକୁ ଯିବାପାଇଁ ସମ୍ପୂର୍ଣ୍ଣ ଅକ୍ଷମ ।

କୃଷ୍ଣ : ପାର୍ଥ, କୌରବମାନେ ଭବିଷ୍ୟତର ପରିଣତି ଭୁଲିଯାଇ ବର୍ତ୍ତମାନ ସର୍ବସ୍ୱ ହୋଇପଡ଼ିଛନ୍ତି । ଅନାଗତ ଅନିଶ୍ଚିତତାରେ ନିଜକୁ ମ୍ରିୟମାଣ କରିବା ସ୍ପୃହଣୀୟ ନୁହେଁ ।

ଅର୍ଜୁନ : ହେ ସଖା ! ଏହା ମୋର ହୃଦୟଙ୍ଗମ ହେଉଛି । ଏ କ୍ଷଣିକ ଉନ୍ମାଦନା ଏ ଯୁଦ୍ଧ ପରି ଅସାର । ସ୍ୱାର୍ଥାନ୍ଧ କୌରବମାନେ ମୃଗତୃଷ୍ଣାକୁ ସୁମଧୁର ଜଳଧାର ମନେକରି ଭ୍ରାନ୍ତିରେ ପଡ଼ିଛନ୍ତି !

କୃଷ୍ଣ : ହେ ପାର୍ଥ, ରାତିର ଅନ୍ଧକାରକୁ ଏକମାତ୍ର ସତ୍ୟ ମଣି ତୁମେ ଆସନ୍ତାକାଲର ସମ୍ଭାବନାକୁ ସମ୍ପୂର୍ଣ୍ଣ ଭୁଲିଯାଇଛ । ଏହି ଘନ ତମିସ୍ରା ମଧ୍ୟରେ ଯେ ଏକ ବର୍ଣ୍ଣାଢ଼୍ୟ ସୁପ୍ରଭାତ ଲୁଚିରହିଛି, ଜୀବନର ଏହି ସତ୍ୟକୁ ପରମ ସତ୍ୟରୂପେ ଗ୍ରହଣ କରିନେଲେ ତୁମର ସମସ୍ତ ସନ୍ଦେହ ଦୂରୀଭୂତ ହୋଇଯିବ ।

ପାର୍ଥ : ଏକ ନିଷ୍ଠୁର ରକ୍ତାକ୍ତ ବର୍ତ୍ତମାନ ମୋର ସବୁ ସ୍ୱପ୍ନକୁ କ୍ଷତବିକ୍ଷତ କରିଦେଇଛି । ଏ ଯୁଦ୍ଧ କୌରବମାନଙ୍କୁ ସର୍ବସ୍ୱହାନ କରିଦେବ । ଏକଥା ଭୁଲିଯାଇ ସେମାନେ ଯୁଦ୍ଧୋନ୍ମତ୍ତ ପାଲଟିଛନ୍ତି । ସେମାନେ ଦୃଷ୍ଟିହୀନ । ଅନିଶ୍ଚିତ ସମ୍ଭାବନାକୁ ପାଥେୟକରି ସେମାନେ ମହାନନ୍ଦରେ କାଳାତିପାତ କରୁଛନ୍ତି ।

କୃଷ୍ଣ : ସେମାନେ ଦୃଷ୍ଟିହୀନ, ତେଣୁ ସେମାନଙ୍କ ସମ୍ମୁଖରେଥିବା ସମୁଜ୍ଜ୍ୱଳ ମାର୍ଗରେ ଯାତ୍ରା କରିବାକୁ ସେମାନେ ଅକ୍ଷମ । ତୁମେମାନେ ନୂତନପଥର ଯାତ୍ରୀ । ସେହି ଆଲୋକିତ ପଥ ତୁମକୁ ସାଦର ନିମନ୍ତ୍ରଣ ଜଣାଉଛି । ତୁମର ବିଜୟ ଅଭିଯାନ ଅବ୍ୟାହତ ରହୁ ।

ଅର୍ଜୁନ : ସଖା, ଯଦୁପତି, ମୁଁ ସନ୍ଦିଗ୍ଧମନା । ମୁଁ ଯନ୍ତ୍ରଣାଗ୍ରସ୍ତ । ମୋର ଆଶା, ଆଦର୍ଶ, ଆକାଙ୍କ୍ଷାର ସମୂଳେ ବିଲୋପ ଘଟିବାକୁ ଯାଉଛି । ତାହା ସ୍ୱପ୍ନ ପରି ଅଳୀକ ମନେହେଲେବି ସତ୍ୟପରି ଜାଜ୍ୱଲ୍ୟମାନ । ମୁଁ ମୋର ନିୟନ୍ତ୍ରଣାଧୀନ ନୁହେଁ ।

କୃଷ୍ଣ : ହେ ସ୍ଥିତପ୍ରଜ୍ଞ ପାର୍ଥ, ତୁମେ ସ୍ଥିର ଓ ଅବିଚଳିତ ହୁଅ । ତୁମ ମନରୁ ଭ୍ରାନ୍ତି ଦୂରକରି ଦିବ୍ୟଚକ୍ଷୁ ଉନ୍ମୋଚନ କର । ଯେଉଁ ଆଲୌକିକ ଦୃଶ୍ୟ ତୁମର ଦୃଷ୍ଟିଗୋଚର ହେବ, ସେଥିରେ ଚିତ୍ତ ନିମଜ୍ଜିତ କର ।

ପାର୍ଥ : ମୁଁ ଏକାନ୍ତ ଅସହାୟ ସଖା । କୁରୁକ୍ଷେତ୍ର ଯୁଦ୍ଧର ଅନାଗତ ହୃଦୟସ୍ପର୍ଶୀ ଚିତ୍ର ମୋତେ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରିଛି । ମାୟା ଓ ଅବିଶ୍ୱାସର ଦିଗନ୍ତବ୍ୟାପୀ ସୀମାହୀନ ବାଲୁକାରାଶି ମଧ୍ୟରେ ପଥ ହଜାଇଥିବା କ୍ଳାନ୍ତ ତୃଷାତୁର ପଥିକଟିଏ ମୁଁ । ଏ ବିଶ୍ୱର ହିଂସା, ସ୍ୱାର୍ଥପରତା ପ୍ରଖର ରୌଦ୍ରତାପ ପରି ପ୍ରତି ମୁହୂର୍ତ୍ତରେ ମୋତେ ତିଳେ ତିଳେ ଦଗ୍ଧ କରି ଅସୀମ ଯନ୍ତ୍ରଣା ଦେଉଛି ।

କୃଷ୍ଣ : ହେ ପରମ ସୁହୃଦ ପାର୍ଥ, କଣ୍ଟକିତ ସତ୍ୟର ପଥଠାରୁ ଆକର୍ଷଣୀୟ ମିଥ୍ୟାର ଛବି ଅଧିକ ମନୋହର । ବିଚଳିତ ମନକୁ ସ୍ଥିର କଲେ ଜୀବନର ମରୁଭୂମି ମଧ୍ୟରେ ତୁମେ ଶାନ୍ତ, ସ୍ନିଗ୍ଧ ଓ ସୁଶୀତଳ ଜଳଧାରର ସନ୍ଧାନ ଅଚିରେ ପାଇପାରିବ । ଆଉମଧ୍ୟ ଏକ ଅଭିନବ ଦୃଶ୍ୟ ତୁମକୁ ରୋମାଞ୍ଚିତ କରିବ । ସେହି ନିକାଞ୍ଚନ ବାଲୁକାରାଶି ମଧ୍ୟରେ କେଉଁଠିନା କେଉଁଠି ଜୀବନର ସତ୍ତା ସାବ୍ୟସ୍ତ କରି କ୍ଷୁଦ୍ର ତରୁଟିଏ ସବୁଜିମାରେ ଭରିଉଠୁଛି ।

ଅର୍ଜୁନ : ହେ ସଖା, ତୁମର ଏହି ଅମୃତମୟ ଆଶ୍ୱାସନାର ବାଣୀ ମୋ ଜୀବନପ୍ରବାହରେ ନୂତନ ଉଦ୍ଦୀପନା ଭରିଦେଉଛି । ମୋତେ ତୁମର ମହାମନ୍ତ୍ରରେ ଦୀକ୍ଷିତ କର ।

କୃଷ୍ଣ : ହେ ସଖା, କୁରୁଯୁଦ୍ଧର ଅହେତୁକ ଆଶଙ୍କାରେ ବିବ୍ରତ ନ ହୋଇ ଏହାକୁ ଜୀବନର ଏକ ସ୍ୱାଭାବିକ ଗତିଭାବେ ସ୍ୱୀକାର କରିନିଅ । ଚିନ୍ତା ଓ ଚେତନାର ଊର୍ଦ୍ଧ୍ୱରେ ଏକ ବିଚିତ୍ର ଭାବମୟ ଜଗତ ଅଛି । ମୋହମୁକ୍ତ ହୋଇ ସେହି ଭାବନା ରାଜ୍ୟରେ ନିମଜ୍ଜିତ ହେଲେ ଏହି ଯୁଦ୍ଧର ଭୟାଭୟ ପରିଣାମ ଓ ପରିବେଶ ତୁମକୁ ଆଦୌ ସ୍ପର୍ଶ କରିବ ନାହିଁ ।

ଅର୍ଜୁନ : ହେ ସଖା, ମୋର ପାର୍ଥିବ ଜଡ଼ତା ଦୂର ହୋଇଯାଇଛି । ମୁଁ ସେହି ଜ୍ଞାନାଲୋକର ସନ୍ଧାନ ପାଇପାରିଛି । ତୁମର ମହାନ ଉପଦେଶକୁ ଜୀବନର ପାଥେୟକରି ମୁଁ ମୋର ଅହଂଭାବକୁ ବିସର୍ଜନକରି ନିଜକୁ ତୁମପାଖରେ ସମ୍ପୂର୍ଣ୍ଣଭାବେ ସମର୍ପଣ କରୁଛି ।

କୃଷ୍ଣ : ଯାଅ ପାର୍ଥ, ତୁମର ମାନସିକ ଓ ଶାରୀରିକ କ୍ଳାନ୍ତି ଏବେ ମଧ୍ୟ ଦୂର ହୋଇନାହିଁ । ବର୍ତ୍ତମାନ ତୁମର ବିଶ୍ରାମ ଏକାନ୍ତ ଆବଶ୍ୟକ । ନୂତନ ପ୍ରଭାତ ତୁମକୁ ଆଯୁଷ୍ମାନ କରୁ ।

ଅର୍ଜୁନ : ମୁଁ ଆସୁଛି ସଖା ! ଯୁଗେ ଯୁଗେ ପାର୍ଥର ତୁମେ ଏକମାତ୍ର ସହାୟ । ବିଚଳିତ ପାର୍ଥକୁ ତୁମେ ବହ୍ନିମାନ କର ।

( କୃଷ୍ଣ ଅର୍ଜୁନଙ୍କୁ ଆଲିଙ୍ଗନ କରିଛନ୍ତି—ଅର୍ଜୁନ କୃଷ୍ଣଙ୍କୁ ପ୍ରଣାମ କରିଛନ୍ତି । ଅର୍ଜୁନଙ୍କ ପ୍ରଣାମ )

କୃଷ୍ଣ : (ହସି ହସି) ସବୁଯୁଗରେ ସବୁକାଳରେ ପାର୍ଥମାନେ ଅପରାଜିତ । ଅମିତ ବଳଶାଳୀ କିନ୍ତୁ ନିଜ ସାମର୍ଥ୍ୟରେ ସନ୍ଦିହାନ ହେତୁ ସେମାନେ ଯୁଗଯୁଗ ଧରି ଉପେକ୍ଷିତ ରୁହନ୍ତି । ମାତ୍ର ଯେଉଁଦିନ ପାର୍ଥମାନେ ପ୍ରତିବାଦର ସ୍ୱର ତୋଳନ୍ତି, ସେଦିନ ଦୁର୍ଯ୍ୟୋଧନର ସ୍ପର୍ଦ୍ଧିତ ଅହଂକାର ଧୂଳିସାତ ହୁଏ । ମହାପରାକ୍ରମୀଭାବରେ ଡିଣ୍ଡିମ ବଜାଉଥିବା କୌରବମାନେ ପରାଜୟ ଗ୍ଳାନିରେ ମଥାନତ କରିବିଅନ୍ତି । ଆଉ ସେହି ମାଙ୍ଗଳିକ ଲଗ୍ନରେ ବାଜିଉଠେ ମୋ ହାତର ବିଜୟର ପାଞ୍ଚଜନ୍ୟ ।

( ଶ୍ରୀକୃଷ୍ଣ ଶଙ୍ଖନାଦ କରିଛନ୍ତି—ଆସିଛି ଅଭିମନ୍ୟୁ )

ଅଭିମନ୍ୟୁ : (ପ୍ରବେଶି) ମୋର ଭକ୍ତିଭରା ପ୍ରଣାମ ଗ୍ରହଣ କରନ୍ତୁ ମାତୁଳ !
(ପ୍ରଣାମ କଲେ)

କୃଷ୍ଣ : ଯଶସ୍ୱୀ ହୁଅ ବତ୍ସ ଅଭିମନ୍ୟୁ !

ଅଭିମନ୍ୟୁ : ମାତୁଳ, ଆପଣଙ୍କର ଏହି ପାଞ୍ଚଜନ୍ୟର ମଙ୍ଗଳନାଦରେ ଆକାଶ ଧରଣୀ ପ୍ରକମ୍ପିତ ହୋଇଉଠୁଛି । ଦ୍ୱିଧାଗ୍ରସ୍ତ ମନରୁ ଆଶଙ୍କାର ଅନ୍ଧାର ଦୂରୀଭୂତ ହୋଇ ନୂତନ ଆଶାର ସଞ୍ଚାର ହୋଇଛି । ସବୁ ପରସ୍ପର ଭିତରୁ ସବୁଜିମାରେ ଭରିଉଠିଲାଣି । ସାରା ବିଶ୍ୱ ଆନନ୍ଦଉଚ୍ଛଳିପଣାରେ ମତ୍ତ ଥିଲାବେଳେ କ'ଣ ପାଇଁ ତା'ହେଲେ ଆଜିର ଏ କୁରୁଯୁଦ୍ଧର ପ୍ରସ୍ତୁତି ?

କୃଷ୍ଣ : ବତ୍ସ ଅଭିମନ୍ୟୁ ! ଯୁଦ୍ଧ ଆଶଙ୍କାରେ ତୋର କୋମଳ ମନ ଆଜି ଶଙ୍କାକୁଳ । ମହାଭାରତ ଯୁଦ୍ଧର କୌଣସି ମନ୍ଦପ୍ରୟାସ ନାହିଁ, ଏହା ବିଶ୍ୱ ପାଇଁ ହିତକର ।

ଅଭିମନ୍ୟୁ : ତ୍ରିକାଳଦ୍ରଷ୍ଟା ଆପଣ । ଏକ ମହାନ ଉଦ୍ଦେଶ୍ୟ ନେଇ ଆପଣଙ୍କର କଳ୍ପନାପ୍ରସୂତ ଏହି କୁରୁଯୁଦ୍ଧ । ଏହି ଉଦ୍ୟୋଗପର୍ବରେ ଅଭିମନ୍ୟୁର ଭୂମିକା ଏବେବି ଅସ୍ପଷ୍ଟ ।

କୃଷ୍ଣ : ଏ ଯୁଦ୍ଧ କଦାପି ଅଭିମନ୍ୟୁ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହାର ମନ୍ଦପ୍ରଭାବ ତୋ ମନର କୋମଳତାକୁ ବିନଷ୍ଟ କରିଦେବ । ଏଥିରେ କୌରବ ଓ ପାଣ୍ଡବମାନଙ୍କ ପକ୍ଷର ବଡ଼ ବଡ଼ ଯୋଦ୍ଧାମାନେ ଅଂଶଗ୍ରହଣ କରି ହସ୍ତିନା ନଗରୀର ଭାଗ୍ୟ ନିର୍ଣ୍ଣୟ କରିବେ ।

ଅଭିମନ୍ୟୁ : ହସ୍ତିନା ନଗରୀରେ ରହି ଏ ଯୁଦ୍ଧର କବଳରୁ ଅଭିମନ୍ୟୁଙ୍କୁ କଦାପି ଖାଲି ମିଳିବ ନାହିଁ । ଅଭିମନ୍ୟୁର ଭୂମିକାକୁ ହେୟମନା ନ କରାଯାଇପାରେ । ଯଦି ଏକ ନୂତନ ସୃଷ୍ଟିର ସର୍ଜନା ପାଇଁ କୁରୁଯୁଦ୍ଧ ଆଜି ଅପରିହାର୍ଯ୍ୟ, ତେବେ ଅଭିମନ୍ୟୁ ଏଥିରେ ଭାଗନେବା ପାଇଁ ଆପଣଙ୍କ ଅନୁମତି ପ୍ରାର୍ଥନା କରୁଛି ।

କୃଷ୍ଣ : ବତ୍ସ ଅଭିମନ୍ୟୁ, ତୋର ଅପୂର୍ବ ସାହସ ଓ ଧୀମତ୍ତା ମୋତେ ମୁଗ୍‌ଧ କରିଛି । ତୋର ପିତା ପାର୍ଥ, ଜ୍ୟେଷ୍ଠଭ୍ରାତ ଯୁଧିଷ୍ଠିର ଯୁଦ୍ଧ ଖାସରେ ଆତଙ୍କିତ । ଆଗାମୀ ଦିନ ସେମାନଙ୍କ ପାଇଁ

ସମସ୍ତ ସମ୍ଭାବନା ହରାଇଛି । ମୁଁ ପ୍ରଫୁଲ୍ଲିତ ସେମାନଙ୍କର ଦ୍ୱିଧାଗ୍ରସ୍ତ ମନର ବୈରାଗ୍ୟ ଅଭିମନ୍ୟୁର ପ୍ରାଣକୁ ସ୍ପର୍ଶ କରନ୍ତ ।

ଅଭିମନ୍ୟୁ : ଏବେ ମଧ୍ୟ ପାଞ୍ଚଜନ୍ୟ ଆପଣଙ୍କ ଶ୍ରୀକରର ଶୋଭାବର୍ଦ୍ଧନ କରୁଛି । ଆପଣ ସେହି ଅମୃତମୟ ଶଙ୍ଖନାଦ କରନ୍ତୁ । ମନ୍ତ୍ରୋଚ୍ଚାରଣ ପରି ସେହି ନିଃସ୍ୱନରେ ସେମାନେ ପୁନର୍ଜୀବନ ଲାଭ କରିବେ । କୁରୁଯୁଦ୍ଧର ସମାପ୍ତି ପରେ ଏକ ନୂତନ ଯୁଗର ଅଭ୍ୟୁଦୟ ହେଉ ।

କୃଷ୍ଣ : ଧନ୍ୟ ଅଭିମନ୍ୟୁ, ମୁଁ ତୋତେ ଆଶୀର୍ବାଦ ଦେଉଛି ତୁ ଆସନ୍ତା କାଲର ବାର୍ତ୍ତାବହ, ତୋ କଣ୍ଠରେ ଅନ୍ଧକାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଦୃଢ଼ ଘୋଷଣା—ଏ ଅଭିଯାନ ନିଷ୍ଫଳ ହେବନାହିଁ । ଇନ୍ଦ୍ରପ୍ରସ୍ଥରେ ପୁଣି ନୂତନ ସୂର୍ଯ୍ୟୋଦୟ ହେବ । କ୍ଲାନ୍ତ ଯୁଧିଷ୍ଠିର ଶଂକାକୁଳ ପାର୍ଥ ସେହି ନିରବଚ୍ଛିନ୍ନ ଜୀବନ ପ୍ରବାହରେ ହଜିଯିବ । ପୁଣି ଏକ ମହାନାଟକର ସୂତ୍ରପାତ ହେବ । ତାର ନାୟକ କୃଷ୍ଣ ନୁହେଁ କି ପାର୍ଥ ନୁହେଁ । କେବଳ ଅଭିମନ୍ୟୁ । ( ଅଭିମନ୍ୟୁକୁ କୃଷ୍ଣ ଆଲିଙ୍ଗନ କରୁଥିଲେ—ଅଭିମନ୍ୟୁ କୃଷ୍ଣଙ୍କୁ ପ୍ରଣିପାତ କଲେ । ମଞ୍ଚ ଅନ୍ଧାର ହୋଇଗଲା । ଦ୍ୱିତୀୟ ଯୋନରେ ଦେଖାଦେଲେ ସୂତ୍ରଧର । ସୂତ୍ରଧରଙ୍କ ମୁହଁରେ ଆଲୋକ । )



## ଦ୍ୱିତୀୟ ଦୃଶ୍ୟ

ସୂତ୍ରଧର : ଆସ ଶକୁନି । ମୁହଁରେ ସେହି ମହାକାଳର କୁଟୀଳ ଅଟ୍ଟହାସ୍ୟ ଭରି ଥରଟିଏ ପାଇଁ ତୁମେ ରଙ୍ଗମଞ୍ଚରେ ପଦାର୍ପଣ କର । ତୁମର ଆଗମନ ପରେ ପରେ ଗାନ୍ଧାରୀ ମଞ୍ଚାସୀନ ହେବେ । ମାନଗୋବିନ୍ଦ ଭୂମିକାରେ ଅବତୀର୍ଣ୍ଣ ହେବେ । ଦୁର୍ଯ୍ୟୋଧନ, ଆମେ ଫେରିଯିବା ସହସ୍ର ସହସ୍ର ବର୍ଷତଳର ସେହି ରହସ୍ୟମୟ ମହାଭାରତ ଯୁଗକୁ—ଯେଉଁଠି ମନଖୋଲି ହସର ଲହରି

ଛୁଟାଇଦିଏ ଶକୁନ, ଯେଉଁଠି ଲୁହର ଲହଗୀ ଓ ହସର ଛନ୍ଦ ଅନାସକ୍ତ ଭାବରେ ଏକ ଆଉ ଅଭିନ୍ନ ହୋଇଯାଏ ।

( ହସି ହସି ଆସିଛି ଶକୁନ )

ଶକୁନ : ହଃ-ହାଃ-ହାଃ ! ମୁଁ ଶକୁନ ହସୁଛି । ହସିଚାଲିଛି ଏମିତି ଅନନ୍ତ ଯୁଗ ଧରି । ଏ ହସର ଅବିରାମ ଗତିର ବନ୍ଦ ନାହିଁ । ଏ ହସର ଆଦି ନାହିଁ କି ଅନ୍ତ ନାହିଁ । ଏ ହସ ଭିତରେ ଏକ ଚିରନ୍ତନ କୋହ କେମିତି ସାରାଦେହକୁ କଣ୍ଟାପରି ବିଦ୍ଧ କରେ । ତାହାର ସାମାନ୍ୟତମ ସୂଚନା ସେମାନେ ପାଆନ୍ତି ନାହିଁ । ମୁଁ ଯେମିତି ଜୀବନ ନାଟକର ମୂକ ଅଭିନେତା । ମୋ ପାଇଁ ସମସ୍ତ ପଥ ଆଜି ଅବରୁଦ୍ଧ । ଏମିତି ଭୀଷ୍ମ, ଦ୍ରୋଣ, ଦୁର୍ଯ୍ୟୋଧନ, ଦୁଃଶାସନ ସମସ୍ତେ ବୁଦ୍‌ବୁଦ୍ ପରି ସମୟ ଗର୍ଭରେ ବିଲୀନ ହୋଇଯିବେ, ଅଥଚ ଶକୁନର ଏହି ଚିରନ୍ତନ ହସ ଥରଟିଏ ପାଇଁ ସ୍ତିମିତ ହେବନାହିଁ । (କାନ୍ଦିଉଠିଛି ଓ ଆସିଛି ଗାନ୍ଧାରୀ )

ଗାନ୍ଧାରୀ : ଶକୁନ···ଶକୁନ···

ଶକୁନ : (ଲୁହ ପୋଛି) କିଏ ? ଓଃ ଭଗ୍ନୀ ଗାନ୍ଧାରୀ !

ଗାନ୍ଧାରୀ : ହଁ ଶକୁନ । ମୁଁ ଗାନ୍ଧାରୀ ଆସିଛି ।

ଶକୁନ : ଭଗ୍ନୀ, ତୁ ମୋର ଅନୁରୋଧ ରକ୍ଷାକରି ଚାଲିଯା । ତୁ ଆସିଲା-ପରେ ମୁଁ କେମିତି ମୂକ ପାଲଟିଯାଉଛି ।

ଗାନ୍ଧାରୀ : ମୁଁ କିନ୍ତୁ ଆଜି ଫେରିଯିବାପାଇଁ ଆସିନି ଶକୁନ !

ଶକୁନ : ମୁଁ ତୋ ପାଦ ଧରୁଛି ଭଗ୍ନୀ । ତୁ ବୁଝିପାରୁନୁ··· (କାନ୍ଦିଉଠି) ନା—ନା—ମୁଁ ହସିପାରୁନି । ଯନ୍ତ୍ରଣାରେ ମୋ କଣ୍ଠ ରୁଦ୍ଧ ହୋଇଯାଉଛି । ମୁଁ କାହାକୁ ଚିହ୍ନିପାରୁନି । କିଏ ସବୁ ତୁମେମାନେ ? କାହିଁକି ମହାକାଳର ଗତିକୁ ପ୍ରତିରୋଧ କରିବାକୁ ଏମିତି ଷଡ଼ଯନ୍ତ୍ର କରୁଛ ?

ଗାନ୍ଧାରୀ : ତୋରି ପରି ମୋ ମନରେ ଆଜି ଅଜସ୍ର ପ୍ରଶ୍ନ—ଏ ମହାଭାରତ ଯୁଦ୍ଧର ଶେଷ କେବେ ? ଯୁଗଯୁଗ ଧରି କାହା ବିରୁଦ୍ଧରେ ଏ ଅବିରତ ସଂଗ୍ରାମ ପାଇଁ ଏମିତି ଗୋପନ ମନ୍ତ୍ରଣା ?

ଶକୁନ : ସତ୍ୟ ଅତି ନିର୍ମମ ଆଉ ନିଷ୍ଠୁର ଭଗ୍ନୀ । ଅସହାୟ ପ୍ରାଣୀ ଆମେସବୁ, ସେହି ଦୁଃଖର ଅଜସ୍ର ଧାରକୁ ଯଥାପ୍ରାପ୍ତ ସହିନେବା ବ୍ୟତୀତ ବିକଳ୍ପ ପନ୍ଥା ନାହିଁ ।

ଗାନ୍ଧାରୀ : ଜନନୀର ଯନ୍ତ୍ରଣା ଯେ ଏକ ଭିନ୍ନ ଯନ୍ତ୍ରଣା, ଏକଥା ତୋତେ କେମିତି ବୁଝାଇବି ଶକୁନ ? ସେହି ବିଷାଦ ସୂର୍ଯ୍ୟ ମୋତେ ଅହରହ ଦଗ୍ଧ କରିଚାଲିଛି, ଅଥଚ ଦେଖି ନ ବୁଝିପାରିବାର ସେହି ଦୁଃଖର କଥା, ମୁଁ କାହାରି ଆଗରେ ବାଖ୍ୟା କରିବାକୁ ଅସମର୍ଥ । ତୁ ଏକ ନୂତନ ଭୂମିକା ଗ୍ରହଣ କର । ଏ ଯୁଦ୍ଧର ଯେପରି ଆଶୁ ଅବସାନ ଘଟୁ ।

( ଆସିଛନ୍ତି ଦୁର୍ଯ୍ୟୋଧନ )

ଦୁର୍ଯ୍ୟୋଧନ : ଏ ଯୁଦ୍ଧର ପ୍ରବାହମାନ ପ୍ରଖରସ୍ରୋତ ଆମ ସନ୍ଧିକୁ କୂଳ ନିକଟରୁ ବହୁ ଦୂରଦୂରାନ୍ତରକୁ ଭସାଇ ନେଇଛି ଜନନୀ—ଶତଚେଷ୍ଟା ସତ୍ତ୍ୱେ ଆମେ କଦାପି ଆଉ ସେଠାରେ ପହଞ୍ଚିପାରିବା ନାହିଁ ।

ଗାନ୍ଧାରୀ : ପୁତ୍ର ଦୁର୍ଯ୍ୟୋଧନ, ଅନ୍ତର ଏହି ଯୁଦ୍ଧ କୌଣସି ପକ୍ଷପାଇଁ ମଙ୍ଗଳପ୍ରସୂନ ନୁହେଁ, ଶାନ୍ତି ଅସୀମ ଆନନ୍ଦର ଉତ୍ସ । ଥରେ ସେହି ସ୍ୱର୍ଗୀୟ ପ୍ରୀତି ଉପଲବ୍ଧ କଲେ ଏ ଧରାରେ ସ୍ନେହ ପ୍ରେମର ମନ୍ଦାକିନୀ ପ୍ରବାହିତ ହେବ ।

ଦୁର୍ଯ୍ୟୋଧନ : ଦୁର୍ଯ୍ୟୋଧନ ନିଜସ୍ୱ ଅହଙ୍କାର ଓ ଆତ୍ମାଭିମାନକୁ ନେଇ ବଞ୍ଚି ରହେ । ଏଥିରେ ସାମାନ୍ୟ ବିଚ୍ୟୁତି ତା ପାଇଁ ଅସହ୍ୟ—ମୃତ୍ୟୁତୁଲ୍ୟ ।

ଶକୁନ : ବତ୍ସ କୁରୁପତି ! ମାତା ଗାନ୍ଧାରୀଙ୍କ ସୁପରାମର୍ଶକୁ ତୁମେ ଅଚିରେ ଗ୍ରହଣ କରିନେବା ବାଞ୍ଛନୀୟ ।

ଦୁର୍ଯ୍ୟୋଧନ : ଗଭୀର ଚିନ୍ତାପରେ ମୁଁ ଶେଷ ନିଷ୍ପତ୍ତି ନେଇଛି । ପାଣ୍ଡବ-ମାନେ ସର୍ବଦା ମନ୍ଦବୁଦ୍ଧିସମ୍ପନ୍ନ ଶ୍ରୀକୃଷ୍ଣଙ୍କ କୁପରାମର୍ଶରେ ପରିଚାଳିତ । ଶ୍ରୀକୃଷ୍ଣ କୌରବମାନଙ୍କର କେବେ ହିତକାମନା

କରନ୍ତୁ ନାହିଁ । ଫଳତଃ କୁରୁସୂର୍ଯ୍ୟ ବ୍ୟତୀତ ବିକଳ୍ପ ପନ୍ଥା ନାହିଁ । ପାଣ୍ଡବମାନଙ୍କର ଔଦ୍ଧତ୍ୟର ତାହାହିଁ ଏକମାତ୍ର ଶାସ୍ତି ।

ଗାନ୍ଧାରୀ : କିନ୍ତୁ ବତ୍ସ ଦୁର୍ଯ୍ୟୋଧନ, କୁମାର୍ଗରେ ପରିଚାଳିତ ହୋଇ ସୁଫଳ ଆଶା କରିବା ସ୍ପୃହଣୀୟ ନୁହେଁ । ହିଂସାଦ୍ୱାରା ବିଜୟ ଘଟେନାହିଁ । ବରଂ ତାର ନାରକୀୟ ପ୍ରଭାବରେ ବ୍ୟକ୍ତି ତଥା ସମଷ୍ଟିର ପ୍ରଭୂତ ଅନିଷ୍ଟ ସାଧିତ ହୁଏ ।

ଶକୁନି : କୁରୁପତି ଦୁର୍ଯ୍ୟୋଧନ, ତୁମେ ମାତା ଗାନ୍ଧାରୀଙ୍କ ସୁପରାମର୍ଶକୁ ଗମ୍ଭୀରଭାବେ ଅନୁଶୀଳନ କର । ସେ ତୁମର ଜନ୍ମଦାତ୍ରୀ । ସେ ତୁମର ମଙ୍ଗଳକାମନା କରନ୍ତି, ତୁମେ ତାଙ୍କର ବାଣୀକୁ ବିନା ଦ୍ୱିଧାରେ ଗ୍ରହଣ କରିନିଅ ।

ଦୁର୍ଯ୍ୟୋଧନ : ଅଣଲେଉଟା ନଦୀର ସ୍ରୋତ ପରି ଦୁର୍ଯ୍ୟୋଧନ ତାର ସଙ୍କଳ୍ପରୁ ନିବୃତ୍ତ ହେବନାହିଁ । ତାର ପ୍ରମତ୍ତ ଅହଂକାରକୁ ନେଇ ତାର ମୃତ୍ୟୁ ହେଲେ ସେ ଅପାର ଆନନ୍ଦଲାଭ କରିବ । ଶେଷସିଦ୍ଧାନ୍ତ ପରେ କୁରୁକ୍ଷେତ୍ର ଯୁଦ୍ଧର ବର୍ତ୍ତମାନପାଇଁ ପରିଣତି ଓ ଆଗାମୀ ଦିନପାଇଁ ଫଳାଫଳ ସବୁ ଅବାନ୍ତର ।

ଗାନ୍ଧାରୀ : ଏବେ ସେହି ମଙ୍ଗଳମୁହୂର୍ତ୍ତ ଅତିକ୍ରାନ୍ତ ହୋଇନାହିଁ ବତ୍ସ ! ତୁମର ଏହି ବିଜୟ, ବିଜୟର ପ୍ରହସନ ମାତ୍ର । ଜ୍ଞାତି ଓ ବନ୍ଧୁରକ୍ତରେ ସାମ୍ରାଜ୍ୟ ଜୟକରି ତୁମେ ଶାନ୍ତିଲାଭ କରିପାରିବ ନାହିଁ ।

ଦୁର୍ଯ୍ୟୋଧନ : ମାତୁଳ, ସ୍ନେହମୟୀ ମାତା ଗାନ୍ଧାରୀଙ୍କୁ ବୁଝାଇଦିଅନ୍ତୁ । ଶାନ୍ତିର ନିରାପଦ ଜନପଦ ଆମେ ବହୁକାଳରୁ ଅତିକ୍ରମ କରି ଅନେକ ଦୂରକୁ ଚାଲିଆସିଛୁ । ବର୍ଷ ବର୍ଷ ଧରି କୌରବ ପାଣ୍ଡବ-ମାନଙ୍କ ମଧ୍ୟରେ ଯେଉଁ ହିଂସା, ଦ୍ୱେଷ, ଘୃଣା ଓ ଅସୂୟାର ଉତ୍ତୁଙ୍ଗ ଦୁର୍ଗ ମୁଣ୍ଡଟେକିଛି, ତାହାର ମଧ୍ୟରେ ଜୀବନଯାପନ କରି ଶାନ୍ତିର ସ୍ୱପ୍ନ ଦେଖିବା ଆତ୍ମପ୍ରବଞ୍ଚନା ମାତ୍ର । ମୁଁ ଆସୁଛି ମାତା ।                    (ପ୍ରସ୍ଥାନ)

ଗାନ୍ଧାରୀ : ମୁଁ ଶକ୍ତିହୀନା । ସେମାନଙ୍କର ବଞ୍ଚିରହିବା ଲୋପପାଇ ମତିଭ୍ରମ ଘଟିଛି । ହସ୍ତିନା ନଗରୀ ପାଇଁ ଘୋର ଦୁର୍ଦ୍ଦିନ, ଅଶୁଭକାଳ

ଉପଗତ । ସେମାନେ ଯୁଦ୍ଧ ମୋହଗ୍ରସ୍ତ । ତାହାର କବଳରୁ ସେମାନଙ୍କୁ ଫେରାଇ ଆଣିବା ମୋର ସାଧ୍ୟାତୀତ ।

( କାନ୍ଦି ଉଠିଛି )

ଶକୁନି : ଭଗ୍ନୀ, ଲୁହ ସମ୍ବରଣକର ଭଗ୍ନୀ—ତୋର ବନ୍ଦ ଏ ଲୁହରେ ଏ ନଗରୀରେ ଏକ ବନ୍ୟା ସୃଷ୍ଟି ହେବ । ହସ୍ତିନା ନଗରୀ ସହ କୌରବ, ପାଣ୍ଡବ, ସମସ୍ତେ ସେହି ମହାସ୍ରୋତରେ ବିଲୀନ ହୋଇଯିବେ ।

ଗାନ୍ଧାରୀ : ମୁଁ ଅସହାୟା, ମୁଁ କିଂକର୍ତ୍ତବ୍ୟବିମୂଢ଼ । ମୋର ମନ୍ଦଭାଗ୍ୟ । ହସ୍ତୀନାନଗରୀର ଧ୍ୱଂସସ୍ତୂପ ଉପରେ ଛିଡ଼ାହୋଇ ମୁଁ ଏହାର ଅକାଳ ମୃତ୍ୟୁ ଦେଖିପାରୁଛି । ପୁତ୍ରହୀନା ଜନନୀର ବୁକୁଫଟା କ୍ରନ୍ଦନ ଓ ପତିହୀନା ନାରୀର ଆକୁଳ ବିଳାପ ମୋର ହୃଦୟକୁ ବିଦୀର୍ଣ୍ଣ କରିଦେଉଛି—ଅଥଚ ମୁଁ ଶକ୍ତିହୀନା; (ହସିଉଠି) ହାଃ—ହାଃ—ମୁଁ ଗାନ୍ଧାରୀ, ମୁଁ ଶତପୁତ୍ରର ଜନନୀ, ମୁଁ ଧୃତରାଷ୍ଟ୍ରର ରାଣୀ । ହାଃ—ହାଃ—(କାନ୍ଦି ଉଠିଛି)

ଶକୁନି : (ଗାନ୍ଧାରୀଙ୍କୁ ହଲାଇଦେଇ) ଭଗ୍ନୀ—ଭଗ୍ନୀ—କ'ଣ ହେଲା ଭଗ୍ନୀ ? ( ଗାନ୍ଧାରୀ ପାଗଳିନୀ ପରି ହସିଚାଲିଥିଲେ—ଶକୁନି ତାଙ୍କୁ ନିବର୍ତ୍ତାଇବାକୁ ଚେଷ୍ଟା କରୁଥିଲେ । ହଠାତ୍ ମଞ୍ଚର ସେହି ପାର୍ଶ୍ୱ ଅନ୍ଧକାର ହୋଇଗଲା । ଲାଇଟ ପଡ଼ିଲା ଅପରପାର୍ଶ୍ୱରେ ଛିଡ଼ାହୋଇଥିବା ସୂତ୍ରଧର ଉପରେ )

ସୂତ୍ରଧର : ତୁମେ ବା କ'ଣ କରିବ ଗାନ୍ଧାରୀ ? ଆମେ ସବୁ ଅସହାୟ ଦ୍ରଷ୍ଟା । ନିଜକୁ ବା କାହାକୁ ଉଦ୍ଧାର କରିବାର କ୍ଷୀଣତମ ସାମର୍ଥ୍ୟ ବି ଆମର ନାହିଁ । ଭାଗ୍ୟହସ୍ତରେ ଭାଗ୍ୟହୀନ କ୍ରୀଡ଼ନକ ଆମେସବୁ; ଯେମିତି ଉତ୍ତରା ଓ ଅଭିମନ୍ୟୁ······

( ମଞ୍ଚ ଅନ୍ଧକାର )



## ତୃତୀୟ ଦୃଶ୍ୟ

[ ମଞ୍ଚ ଆଲୋକିତ ହେଲା । ଅଭିମନ୍ୟୁ ଶର ପରୀକ୍ଷା କରୁଥିଲେ । ସେ ସମ୍ପୂର୍ଣ୍ଣ ଅନ୍ୟମନସ୍କ—ହଠାତ୍ ପଛରୁ ଆସିଛନ୍ତି ଉତ୍ତରା—ସେ ଅଭିମନ୍ୟୁଙ୍କୁ ହଲାଇ ଦେଇଛନ୍ତି । ]

ଉତ୍ତରା : ବାଃ, ପୁଣି ପ୍ରସ୍ତୁତି ? କାହାପାଇଁ ଏ ଅସ୍ତ୍ର ପରୀକ୍ଷା ? କ'ଣ ପାଇଁ ଏ ସାଧନା, ବାହାରେ ବିପୁଳ ଜ୍ୟୋତ୍ସ୍ନା ?

ଅଭିମନ୍ୟୁ : ଏ ଜ୍ୟୋତ୍ସ୍ନା ମୋତେ ଆକର୍ଷିତ କରିପାରୁନି । ମୋପାଇଁ ସବୁ ଦୃଶ୍ୟ ଗୋଟିଏ ଦୃଶ୍ୟ ପାଲଟିଯାଉଛି । ଗ୍ରହ, ନକ୍ଷତ୍ରଭରା ଅସୀମ ନୀଳଆକାଶ ବଡ଼ ନିଃସ୍ୱ ମନେହେଉଛି । ଚନ୍ଦ୍ରମା ଯେପରି ରୋଗଗ୍ରସ୍ତ । କୁରୁଯୁଦ୍ଧ ସବୁରି ଅଲକ୍ଷ୍ୟରେ ସାରା ବିଶ୍ୱକୁ ଆଚ୍ଛାଦିତ କରିଛି ।

ଉତ୍ତରା : ତୁମେହିଁ ମୋତେ ଦିନେ ଏକ ଭିନ୍ନ ଇଲାକାର ଠିକଣା ବତାଇ ଦେଇଥିଲ କୁମାର । ତୁମେହିଁ ମୋତେ ପ୍ରଥମେ କହିଥିଲ, ହସ୍ତିନା ନଗରୀରେ ଭରିରହିଛି ଅମାପ ଐଶ୍ୱର୍ଯ୍ୟ । ଏଠି କାହା ନୟନରୁ ବିନ୍ଦୁଏ ଲୁହ ଝରେନା । ନିଷ୍ପାପ ଫୁଲପରି ହସଧାର ସଭିଙ୍କ ଓଠରେ ଝୁଲିଥାଏ । ଆଜି କ'ଣ ପାଇଁ ତୁମ ମନରେ ଏତେ ଦ୍ୱନ୍ଦ୍ୱ ?

ଅଭିମନ୍ୟୁ : ହେଉନରି ମୋ ନିଜ ସ୍ୱଳାପ ମୋତେ ଯେମିତି ଏକ ଭିନ୍ନ ମଣିଷର ବାର୍ତ୍ତାପରି ଶୁଭୁଛି । ନିଜ ଅଜାଣତରେ ନିଜପାଇଁ ନିଜକଥା ଅଲୋଡ଼ା ମନେହେଉଛି । ନିଜ ଗଢ଼ା ବନ୍ଦୀଶାଳାରେ ଅସହାୟ ପାଞ୍ଚପାଣ୍ଡବ ଆମେସବୁ । କେତେ ବା ଚିହ୍ନେ ମୁଁ ଜୀବନକୁ ? କେତେ ବା ଜାଣେ ଏ ସଂସାରର ବୈଚିତ୍ର୍ୟକୁ ? ସେଇଥିପାଇଁ ନିଜ ପଥରେ ମୁଁ ଆଜି ପଥହରା । ନିଜ କକ୍ଷରେ ମୁଁ ଆଜି କକ୍ଷଚ୍ୟୁତ ।

ଉତ୍ତରା : ତୁମେ ମୋର ହାତ ଧର କୁମାର । ମୁଁ ତୁମକୁ ଭିନ୍ନ ଏକ ପଥରେ ଅନ୍ୟ ଏକ ରାଜ୍ୟକୁ ନେଇଯିବି । ଯେଉଁଠି ତୁମେ ତୁମର ସ୍ୱପ୍ନର ନଗରୀକୁ ଫେରପାଇବ ।

ଅଭିମନ୍ୟୁ : ସେ ନଗରୀ ଏବେ ଆମର ଫୁଲର ସୁରଭି ପରି ମନପ୍ରାଣକୁ ଆମୋଦିତ କଲେ ମଧ୍ୟ ଆମେ ସବୁ ଛୁଇଁପାରିବା ନାହିଁ । ଉତ୍ତରା, ଦୁର୍ଯ୍ୟୋଧନର ସ୍ପର୍ଦ୍ଧିତ ଅହଂକାର ପାଇଁ ସେ ନଗରୀର ଆକାଶ୍ମିକ ବିଲୟ ଘଟିବାକୁ ଯାଉଛି ।

ଉତ୍ତରା : ତୁମେ ବିଚଳିତ କୁମାର । ଏ ଯୁଦ୍ଧ ତୁମର କୋମଳ ମନକୁ ଚହଲାଇ ଦେଇଛି । ମାତୁଳ ଶ୍ରୀକୃଷ୍ଣ ଆସିଛନ୍ତି । ସେ ଆମକୁ ସଠିକ୍ ଦିଗ୍‌ଦର୍ଶନ ଦେଇପାରିବେ । ( ଆସିଛନ୍ତି କୃଷ୍ଣ—ଉଭୟେ ତାଙ୍କୁ ପ୍ରଣିପାତ କରିଛନ୍ତି । )

କୃଷ୍ଣ : ଆୟୁଷ୍ମତୀ ହୁଅ ମା' ଉତ୍ତରା । ଯଶସ୍ୱୀ ହୁଅ ବତ୍ସ ଅଭିମନ୍ୟୁ ।

ଉତ୍ତରା : କୁମାରଙ୍କ ମନ ଆଜି ଶଂକାକୁଳ । ଆପଣ ତାଙ୍କୁ ଉଚିତ୍ ମାର୍ଗ ପ୍ରଦର୍ଶନ କରନ୍ତୁ ।

ଅଭିମନ୍ୟୁ : ଉତ୍ତରାଙ୍କର ସ୍ୱପ୍ନକାତର ମନ ଏ ଯୁଦ୍ଧର ବାସ୍ତବତାକୁ ଗ୍ରହଣ କରିପାରୁ ନାହିଁ । ଏ ଯୁଦ୍ଧ ଯେ ଆମପାଇଁ ଅପରିହାର୍ଯ୍ୟ, ଏ କଥା ସେ ଅସ୍ୱୀକାର କରୁଛନ୍ତି ।

କୃଷ୍ଣ : ଉତ୍ତରା ମା' କଥାର ଯଥାର୍ଥତାକୁ ତୁମେ ଗୁରୁତ୍ୱ ଦିଅ ବତ୍ସ ! ଏ ଯୁଦ୍ଧ ତୁମର ମନ ଆଉ ହୃଦୟକୁ ସ୍ପର୍ଶ ନ କରୁ ।

ଅଭିମନ୍ୟୁ : ତାହା କ'ଣ କେବେ ସମ୍ଭବ ମାତୁଳ । ଏ ଯୁଦ୍ଧକୁ ଅସ୍ୱୀକାର କଲେ ଆମେ ସତ୍ୟର ଅପଳାପ କରିବା । ବରଂ ଏ ଯୁଦ୍ଧରେ ମୋର ଭୂମିକା ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ସଚେତନ ।

ଉତ୍ତରା : ଆପଣ କ'ଣ ବିଶ୍ୱାସ କରନ୍ତି ମାତୁଳ—କୁମାରଙ୍କ ଏହି ଭୂମିକା ପାଇଁ ଇତିହାସ ତାଙ୍କୁ ଏକ ନୂତନ ସ୍ୱୀକୃତି ଦେବ ।

ଅଭିମନ୍ୟୁ : ଉତ୍ତରାକୁ ଆପଣ ବୁଝାଇଦିଅନ୍ତୁ ମାତୁଳ—ମୁଁ ଅବିଶ୍ୱାସୀ । ଇତିହାସ ମୋର ଆସ୍ଥାଭାଜନ ନୁହେଁ । ଅନାଗତ ଆସନ୍ନାକାଳ

ମୋ ପାଇଁ ସର୍ବଦା ଅନାକାଙ୍କ୍ଷିତ ଅଶାନ୍ତ ବିସ୍ମୃତ ଗର୍ଭରେ ଅନେକ ପୂର୍ବରୁ ସମ୍ଭ ହଜାଇଛି—ଉଜ୍ଜ୍ୱଳ ଭବିଷ୍ୟତର ନୂଆ ସମ୍ଭାବନା ନେଇ ମୋ ଆଗରେ ଠିଆହୁଏ ବର୍ତ୍ତମାନ । ହେଇଥିପାଇଁ ମୋର ଏ ପ୍ରସ୍ତୁତି ।

କୃଷ୍ଣ : ଏ ପ୍ରସ୍ତୁତି ବ୍ୟର୍ଥ ହେବନାହିଁ ବତ୍ସ ଅଭିମନ୍ୟୁ । ରାତିର ଅନ୍ଧକାର ଭିତରେ ସୁପ୍ରଭାତର ମୋହ ମୋତେ ମୋହାଚ୍ଛନ୍ନ କରୁଛି । ଏ ଯୁଦ୍ଧ ଆମର ଭାଗ୍ୟ ନିର୍ଣ୍ଣୟ କରିବ । ( ଦୂରରୁ, ଜୟ କୁରୁପତି ଦୁର୍ଯ୍ୟୋଧନଙ୍କ ଜୟ ) କୌରବ ଶିବିରରୁ କୋଳାହଳ ଶୁଭୁଛି । ସେମାନେ ବିପୁଳ ସେନାର ଅଧିନାୟକ । ସେମାନେ ଆସ୍ଫାଳନ କରୁଛନ୍ତି । ତାଙ୍କର ପ୍ରଭୁତ୍ୱରେ ସମଗ୍ର ହସ୍ତିନା-ନଗରୀକୁ କବ୍ଜା କରିନେବେ ।

ଅଭିମନ୍ୟୁ : ଏହା ସେମାନଙ୍କର ବ୍ୟର୍ଥ ଆସ୍ଫାଳନ ମାତ୍ର ମାତୁଳ । ଧର୍ମ ସଂସ୍ଥାପନା ପାଇଁ ଏ ଯୁଦ୍ଧରେ ସ୍ୱୟଂ ଯଦୁପତି ସାରଥି ସାଜିଛନ୍ତି । ଧର୍ମରାଜ ଯୁଧିଷ୍ଠିର ଅସୀ ଧରିଛନ୍ତି—ନ୍ୟାୟପ୍ରତିଷ୍ଠା ସୁନିଶ୍ଚିତ ।

କୃଷ୍ଣ : ଅଃ, ମୁଁ ଅନାଗତ ଆଶାର ଦିବ୍ୟ ଆଲୋକ ଦେଖିପାରୁଛି । ତୁମର ଅଭିଳପ୍ସା ସାର୍ଥକ ରୂପ ନେଉ ବର୍ତ୍ତମାନ ରାତିର ବିଳମ୍ବିତ ପ୍ରହର । ତୁମମାନଙ୍କର ବିଶ୍ରାମ ଏକାନ୍ତ ପ୍ରୟୋଜନ ।

( ଅଭିମନ୍ୟୁ ଓ ଉତ୍ତରା ଶ୍ରୀକୃଷ୍ଣଙ୍କୁ ପ୍ରଣାମକରି ବିଦାୟ ନେଲେ )

କୃଷ୍ଣ : (ଆତ୍ମବିସ୍ମୃତ ହୋଇ) ଏକ ପ୍ରଲୁବ୍ଧ ପତଙ୍ଗ ପରି ମହାଭାରତ ଯୁଦ୍ଧର ପ୍ରଜ୍ଜ୍ୱଳିତ ବହ୍ନି ମୋତେ ଆକର୍ଷିତ କରିନେଉଛି । ଏ ସଂଗ୍ରାମ ହେବ କାଳଜୟୀ ସଂଗ୍ରାମ । ଶତ ଶତ ଉତ୍ତରା, ଅଭିମନ୍ୟୁର ଆତ୍ମାହୁତି କଦାପି ବ୍ୟର୍ଥ ହେବନାହିଁ । ଜନନୀ ଗାନ୍ଧାରୀ ଆସୁଛନ୍ତି, ହୁଏତ ଏ ଯୁଦ୍ଧ ଆଶଙ୍କା ତାଙ୍କ ସ୍ନେହକାତର ମନକୁ ଆନ୍ଦୋଳିତ କରୁଛି । ( ଗାନ୍ଧାରୀଙ୍କର ପ୍ରବେଶ )

ଗାନ୍ଧାରୀ : ଗାନ୍ଧାରୀ ଚକ୍ଷୁରେ ସବୁଦିନପାଇଁ ଏମିତି ଅନ୍ଧପୁତୁଳି ହସ୍ତିନା ନଗରୀର ସୂର୍ଯ୍ୟୋଦୟ ତାକୁ ପୁଲକିତ କରେନାହିଁ । ଚନ୍ଦ୍ରର ମାୟାବିନୀ ଜ୍ୟୋତ୍ସ୍ନା ତାକୁ ମୋହାବିଷ୍ଟ କରେନାହିଁ । ବିବାହିତ

ତା'ପାଇଁ ଅମାବାସ୍ୟାର ଘନ ଅନ୍ଧକାର, କାହିଁକି ରହସ୍ୟକର୍ତ୍ତା
କୃଷ୍ଣ ? କ'ଣ ତାଙ୍କର ଇଚ୍ଛା ? କ'ଣ ପାଇଁ ଏ ଭ୍ରାତୃଯୁଦ୍ଧ ?

କୃଷ୍ଣ : ଭକ୍ତିପୂତ ପ୍ରଣାମ ଗ୍ରହଣ କରନ୍ତୁ ଜନନୀ ଗାନ୍ଧାରୀ !

( କୃଷ୍ଣ ପ୍ରଣାମ କଲେ )

ଗାନ୍ଧାରୀ : ହେ ମାୟାବୀ କୃଷ୍ଣ—ଶେଷ ପ୍ରଶ୍ନର ଶେଷ ଉତ୍ତର ଏବେବି
ଅମୀମାଂସିତ । କଣ ପାଇଁ ଭାଇ ଭାଇ ମଧ୍ୟରେ ଏ ଯୁଦ୍ଧ ? କେଉଁ
ମହାନ ଲକ୍ଷ୍ୟନେଇ ଏ ସମର ସମ୍ଭାର ଋପୂଳ ଆୟୋଜନ ?

କୃଷ୍ଣ : ଏ ପ୍ରଶ୍ନର ଉତ୍ତର ମୋତେବି ଅଗୋଚର । ବୋଧହୁଏ କୁରୁପତି
ଦୁର୍ଯ୍ୟୋଧନ ତାଙ୍କର ପ୍ରଚଣ୍ଡ ଶକ୍ତି ପ୍ରତିଷ୍ଠା ପାଇଁ ଏ ସମରର
ଅହ୍ୱାନ ଦେଇଛନ୍ତି । ମୋର ଭୂମିକା ଅତି ନଗଣ୍ୟ ।

ଗାନ୍ଧାରୀ : ଗାନ୍ଧାରୀକୁ ତୁମେ ଭୁଲାଇପାରିବ ନାହିଁ କୃଷ୍ଣ । ସମଗ୍ର
ମହାଭାରତ ତୁମର ସର୍ଜ୍ଜନା । ତୁମେହିଁ ତାର କର୍ମ, ତୁମେହିଁ
ତାର କର୍ତ୍ତା । ତୁମେହିଁ ତାର କ୍ରିୟା । ତୁମର ଇଙ୍ଗିତ
ବ୍ୟତିରେକେ କୌଣସି ଘଟଣା ସୃଷ୍ଟି ହୁଏନା ।

କୃଷ୍ଣ—ମୋତେ ଭୁଲ ବୁଝନ୍ତୁ ନାହିଁ ମାତା ଗାନ୍ଧାରୀ । ମୋର ସମସ୍ତ
ଉଦ୍ୟମ ସତ୍ତ୍ୱେ ମୁଁ ସେମାନଙ୍କୁ ନିବର୍ତ୍ତାଇ ପାରିଲି ନାହିଁ । ଆମ
ଅଜାଣତରେ ଏହା ଆମର ଭାଗ୍ୟକୁ ନିୟନ୍ତ୍ରଣ କରୁଛି ।

ଗାନ୍ଧାରୀ : ମୁଁ ଜାଣେ କୃଷ୍ଣ । ରିକ୍ତହସ୍ତରେ ଗାନ୍ଧାରୀ ଫେରିଯିବ—ମାତ୍ର
ଅନ୍ତତଃ ଏ ପାଇଁ ଗାନ୍ଧାରୀର କରୁଣ ନିବେଦନକୁ କର୍ଣ୍ଣପାତ
କର । ଭାଇ ଭାଇ ଭିତରେ ରକ୍ତପାତର ଅବସାନ ହେଉ ।
ଗାନ୍ଧାରୀର ଆବେଦନ ଯେପରି ନିଷ୍ଫଳ ନ ହୁଏ । ମୁଁ ଆସୁଛି
କୃଷ୍ଣ । ( ଗାନ୍ଧାରୀର ପ୍ରସ୍ଥାନ )

କୃଷ୍ଣ : ଏହାହିଁ ବୋଧେ ବିଧି ନିର୍ଦ୍ଦିଷ୍ଟ । ଏହାହିଁ ବୋଧେ ଭାଗ୍ୟର ନିର୍ମମ
ଉପହାସ । ସବୁଦିନପାଇଁ କୃଷ୍ଣ ସମସ୍ତଙ୍କ ପାଖରେ ରହସ୍ୟମୟ
ଆକାଶ ପରି ଦୁର୍ବୋଧ ହୋଇ ରହିଯାଏ । କେହି ଜଣେ ଥରକ
ପାଇଁ ତାର ଅସହାୟତାକୁ ଉପଲବ୍ଧି କରିପାରନ୍ତି ନାହିଁ ।
( ଆସିଛି ଶକୁନି ) ସମ୍ମାନ ଗ୍ରହଣ କରନ୍ତୁ ମାତୁଳ ଶକୁନି···

ଶକୁନ : ପୁଣି କେଉଁ ନୂଆ ସୃଷ୍ଟି ପାଇଁ ଚିନ୍ତାନ୍ୱିତ କୃଷ୍ଣ ? ପୁଣି କେଉଁ ନୂତନ ପର୍ବର ଉଦ୍ୟୋଗ ।

କୃଷ୍ଣ : କ'ଣ ବା ଆପଣଙ୍କୁ ଅଗୋଚର ମାତୁଳ ? ମାତା ଗାନ୍ଧାରୀ ବ୍ୟାଥାତୁର ହୃଦୟରେ ନୈରାଶ୍ୟରେ ଫେରିଗଲେ, ଅଥଚ···

ଶକୁନ : ଘରି ଘରି ମଧ୍ୟରେ ଯୁଦ୍ଧର ବଜ୍ରନିର୍ଘୋଷ । ଏବେ କ'ଣ ତା ସମ୍ଭବ ଯଦୁପତି ?

କୃଷ୍ଣ . କୌରବମାନଙ୍କର ଆତ୍ମାଭିମାନ ଆମକୁ ଯୁଦ୍ଧକୁ ଟାଣିନେଇଛି । ଯଦି ପାଣ୍ଡବମାନଙ୍କୁ ସାମାନ୍ୟତମ ପାଞ୍ଚଗୋଟି ପଲ୍ଲୀ ଦିଆଯାଇପାରିଥାନ୍ତା— ମହାଭାରତ ଯୁଦ୍ଧ ହୁଏତ ଏଡ଼ାଇ ଦିଆଯାଇ ପାରିଥାନ୍ତା ।

ଶକୁନ : ଏ ଏକ ଅଳୀକ କଳ୍ପନା କୃଷ୍ଣ । କୁରୁ ପାଣ୍ଡବ ମଧ୍ୟରେ ଯୁଦ୍ଧ ସଙ୍ଗଠିତ ନ ହେଲେ ମହାକାବ୍ୟ ମହାଭାରତ ସବୁ ଯୁଗ ପାଇଁ ଅସମ୍ପୂର୍ଣ୍ଣ ରହିଯିବ । ତା'ପରେ ମହାନାୟକ କୃଷ୍ଣର ଭୂମିକା ଅବାନ୍ତର ଓ ନିଷ୍ପ୍ରୟୋଜନ ମନେହେବ ।

କୃଷ୍ଣ : କୃଷ୍ଣର ଅସମର୍ଥତାକୁ ଏପରି ପରିହାସ ପ୍ରଦର୍ଶନୀୟ ନୁହେଁ ମାତୁଳ ।

ଶକୁନ : ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ତୁମର ବାକ୍‌ଚାତୁରୀ ମୋହରେ ଭୁଲିଗଲେ ମଧ୍ୟ ଶକୁନ ତାହା କଦାପି ବିଶ୍ୱାସ କରିବ ନାହିଁ । କୁରୁଯୁଦ୍ଧ ଆରମ୍ଭରେ ତାର ଆବିର୍ଭାବ । କୁରୁଯୁଦ୍ଧ ସମାପ୍ତିରେ ତାର ବିଲୟ । ବର୍ତ୍ତମାନପାଇଁ ତାର ଭୂମିକା ତୁମର ଇଙ୍ଗିତରେ କେବଳ—ଖଳନାୟକ (ହସିଲେ)

( ମଞ୍ଚରୁ ଆଲୋକ ମ୍ଳାନ ହୋଇଆସିଲା । ଆଲୋକର କ୍ଷୁଦ୍ର ରେଖାଟିଏ ପଡ଼ିଛି ଦଣ୍ଡାୟମାନ ସୂତ୍ରଧର ମୁହଁରେ )

ସୂତ୍ରଧର : ସତରେ କୃଷ୍ଣ—ତୁମେ ଦୁର୍ବୋଧ୍ୟ । ଅସୀମ ଆକାଶର ନୀଳିମା ପରି ତୁମେ ପରିବ୍ୟାପ୍ତ । ଅଥଚ ତୁମକୁ ସ୍ପର୍ଶ କରିହୁଏନା । ତୁମେ ସମଗ୍ର ବିଶ୍ୱକୁ ଆଚ୍ଛାଦିତ କର । ତୁମକୁ ନେଇ ଘଟଣାରୁ ଘଟଣା ଜନ୍ମ ନିଏ । ଅଥଚ ସମସ୍ତ ଘଟଣାଠାରୁ ତୁମେ ବହୁ ଦୂରରେ । କାରଣ ତୁମେ କର୍ତ୍ତା ନୁହଁ— ତୁମେ ଦ୍ରଷ୍ଟା । ତୁମେ ଯେମିତି ଆଲୋକର ପାଖେ ପାଖେ ଏକ ଅସ୍ପଷ୍ଟ ଛାୟା ।

ତୁମକୁ ବୁଝିବାପାଇଁ ଜନ୍ମାନ୍ତରରୁ ଜନ୍ମାନ୍ତର ବିତିଯାଏ । ଖାଲି ତାହାକି ନୁହେଁ, ଦେବତାଙ୍କ ମନରେ ତୁମେ ପ୍ରଶ୍ନଟିଏ ହୋଇ ରହିଯାଅ । ଥରେ ଥରେ ଏମିତିବି ସଞ୍ଜୟର 'ଦିବ୍ୟଦୃଷ୍ଟିରେ ଧୃତରାଷ୍ଟ୍ରର ଯନ୍ତ୍ରଣା ପାଲଟିଯାଅ ।

(ସେ ହସିଯାଉଥିଲେ—ଆଲୋକ ଲିଭି ଆସୁଥିଲା । ପରବର୍ତ୍ତୀ ଦୃଶ୍ୟରେ )

## ଚତୁର୍ଥ ଦୃଶ୍ୟ

[ ସଞ୍ଜୟ ଓ ଧୃତରାଷ୍ଟ୍ର ମଞ୍ଚଉପରେ—ସଞ୍ଜୟ ଧୃତରାଷ୍ଟ୍ରଙ୍କ ହାତଧରି ବାଟ କଢ଼ାଉଥିଲେ ]

ଧୃତରାଷ୍ଟ୍ର : ସଞ୍ଜୟ, କେମିତି ଏକ ଅନାଗତ ଆଶଙ୍କାରେ ମୋ ମନ ପ୍ରାଣ ଆନ୍ଦୋଳିତ ହୋଇଉଠୁଛି ।

ସଞ୍ଜୟ : ମୋର ଦିବ୍ୟଚକ୍ଷୁରେ ମୁଁ ଦେଖିପାରୁଛି, ହସ୍ତିନାନଗରୀକୁ କେମିତି ଏକ ବିଭୀଷିକା ଗ୍ରାସ କରୁଛି । ଦୁର୍ଦ୍ଦିନକାଳ ଉପଗତ । ଚତୁର୍ଦ୍ଦିଗରେ ଆତଙ୍କ ଖେଳିଯାଉଛି ।

ଧୃତରାଷ୍ଟ୍ର : କ'ଣ ପାଇଁ ଏ ସମରସଜ୍ଜା ? କିଏ ଦେଇପାରିବ ଏହାର ଉତ୍ତର ? ପୁତ୍ରାନ୍ଧ ଧୃତରାଷ୍ଟ୍ରର ଏହା କ'ଣ ଏକମାତ୍ର ଅଭିଳାଷା ?

ସଞ୍ଜୟ : ଏ ପ୍ରଶ୍ନ ଆଜି ଅଳୀକ ମନେହେଉଛି ମହାରାଜ ! କ୍ଷମତାଲିପ୍ସା ସେମାନଙ୍କୁ ଅନ୍ଧ କରିଛି । ମିଛ ଅହଂକାରରେ ସେମାନେ ଆଜି ପଥଭ୍ରଷ୍ଟ । ଏଥିରୁ ପରିତ୍ରାଣ ନାହିଁ । ମାତୁଳ ଶକୁନି ବିମର୍ଷ ମନରେ ଏହି ଆଡ଼କୁ ଆସୁଛନ୍ତି ।

ଶକୁନି : (ପ୍ରବେଶି) ମୋର ଯଥାମାନ୍ୟ ଗ୍ରହଣ କରନ୍ତୁ ଭ୍ରାତୃଦେବ ।

ଧୃତରାଷ୍ଟ୍ର : ଏ ଯୁଦ୍ଧର ପ୍ରାସଙ୍ଗିକତା ମୋ ପାଇଁ ଏବେବି ଦୁର୍ବୋଧ । —ଏ ଯୁଦ୍ଧ ଆଦୌ ବାଞ୍ଛନୀୟ ନୁହେଁ ।

ଶକୁନି : ଯୁଦ୍ଧ ବ୍ୟତୀତ ଶାନ୍ତିର ସମସ୍ତ ପଥ ଅବରୁଦ୍ଧ ହୋଇଯାଇଛି । ଏହା ବ୍ୟତୀତ କୁରୁପତିଙ୍କ ପାଇଁ ଏ ଯୁଦ୍ଧ ସ୍ୱାଗତଯୋଗ୍ୟ ।

ମାନଗୋବିନ୍ଦଙ୍କ ଶାରଷ୍ଟ ସମ୍ବର୍ଦ୍ଧନପାଇଁ ସାର୍ବଜନୀନ ସ୍ୱୀକୃତି ଲାଭ କରିବ ?

ଧୃତରାଷ୍ଟ୍ର : କି ପ୍ରୟୋଜନ ଏ ବିଜୟରେ । ଯଦି ହସ୍ତୀନାପୁରକୁ ଏହା ମହାଶ୍ମଶାନରେ ପରିଣତ କରିଦିଏ ? କି ସ୍ୱୀକୃତି ଏ ସଂଗ୍ରାମରେ, ଯଦି ଏ ନଗରୀକୁ ଐଶ୍ୱର୍ଯ୍ୟ ଓ ଉଲ୍ଲାସରେ ଭରି ନ ଦିଏ ?

ଶକୁନି : ଜୟ ପରାଜୟର ଭିତ୍ତିରେ ଯୁଦ୍ଧର ସିଦ୍ଧାନ୍ତ ଗ୍ରହଣ କରାହୁଏ ନାହିଁ । ଦୁର୍ଯ୍ୟୋଧନଙ୍କ ବୃହତ୍ତର ସ୍ୱାର୍ଥ ଏଥିସହ ଜଡ଼ିତ । ଏହାର ବିରୋଧକଲେ ଏହା କୁରୁପତିଙ୍କ ପ୍ରତି ଅନୁକୂଳ ହେବନାହିଁ ।

ଧୃତରାଷ୍ଟ୍ର : ମୁଁ ତୁମସହ ଏକମତ ନୁହେଁ ଶକୁନି । ତୁମେ ଶାନ୍ତିସ୍ଥାପନାରେ ବ୍ରତୀ ହୁଅ । ହସ୍ତୀନା ନଗରୀର ଦିଗନ୍ତରୁ ଯୁଦ୍ଧର ଧୂମ୍ରପଟଳ ଅପସରିଯାଉ । ଯୁଦ୍ଧ ଆତଙ୍କିତ ନଗରବାସୀମାନେ ଶାନ୍ତିରେ ନିଶ୍ୱାସ ମାରି କାଳାତିପାତ କରନ୍ତୁ ।

ଶକୁନି : କୁରୁପତି ମୋର ବାଣୀକୁ ଶ୍ରବଣ କରିବେନାହିଁ ।

ଧୃତରାଷ୍ଟ୍ର : ଅନ୍ଧ ଧୃତରାଷ୍ଟ୍ରର ତାହାହିଁ ଆକୁଳ ମିନତି । ଏ ଭ୍ରାତୃବିବାଦ ଦେଶପକ୍ଷରେ ଆଦୌ ମଙ୍ଗଳଦାୟକ ନୁହେଁ । ବ୍ୟକ୍ତି ସ୍ୱାର୍ଥପାଇଁ ସମୂହସ୍ୱାର୍ଥକୁ ଜଳାଞ୍ଜଳି ଦେବା ଉଚିତ ହେବନାହିଁ । ଦେଶ ଓ ଦଶର ଉନ୍ନତି ପାଇଁ ଶାନ୍ତି ଅପରିହାର୍ଯ୍ୟ । ଏ ଧ୍ରୁବବାଣୀ ଅନ୍ୟଥା ନ ହୋଇପାରେ ।

( ଜୟଦ୍ରଥ ପ୍ରବେଶକରି ଧୃତରାଷ୍ଟ୍ରଙ୍କୁ ପ୍ରଣାମ କଲେ )

ଜୟଦ୍ରଥ : ମହାରାଜ ମୋର ପ୍ରଣାମ ଗ୍ରହଣ କରନ୍ତୁ । ମାତୁଳ ଶକୁନି — କୁରୁପତି ଆପଣଙ୍କ ପରାମର୍ଶନିମନ୍ତେ ଅପେକ୍ଷା କରିଛନ୍ତି ।

ଧୃତରାଷ୍ଟ୍ର : ଜୟଦ୍ରଥ, ତୁମେ ଦୁର୍ଯ୍ୟୋଧନକୁ ଶାନ୍ତିର ପ୍ରସ୍ତାବ ଦିଅ । ଅବିଳମ୍ବେ ଯୁଦ୍ଧର ସମସ୍ତ ପ୍ରସ୍ତୁତି ବନ୍ଦ ହେଉ ।

ଶକୁନି : ଜୟଦ୍ରଥ, ତୁମେ ଭ୍ରାତା ଧୃତରାଷ୍ଟ୍ରଙ୍କ ଏହି ବାର୍ତ୍ତା ତୁରନ୍ତ ଦୁର୍ଯ୍ୟୋଧନଙ୍କୁ ଜଣାଅ । ସେ ଯୁଦ୍ଧବିରତିର ପ୍ରସ୍ତାବ ଯୁଧିଷ୍ଠିରଙ୍କୁ ଦିଅନ୍ତୁ । ଶ୍ରୀକୃଷ୍ଣଙ୍କୁ ଏହା ଅବଗତ କରାଅ ।

ଜୟଦ୍ରଥ : ଏହା ସମ୍ପୂର୍ଣ୍ଣ ଅସମ୍ଭବ । ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ପରାମର୍ଶଦାତା, ଦୁର୍ଯ୍ୟୋଧନଙ୍କ ପ୍ରତି ତାଙ୍କର ସାମାନ୍ୟତମ ସଦିଚ୍ଛା ନାହିଁ ।

ଶକୁନ : ତାହାହିଁ ମୋର ବ୍ୟକ୍ତିଗତ ମତ । ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ପରିଚାଳିତ କରୁଥିବା ପର୍ଯ୍ୟନ୍ତ ସେମାନଙ୍କଠାରୁ ନ୍ୟାୟ ଆଶା କରିବା ବିଡ଼ମ୍ବନା ମାତ୍ର ।

ଧୃତରାଷ୍ଟ୍ର : ଆଃ ସଞ୍ଜୟ, ଏ ଯୁଦ୍ଧହିଁ ମୋର ମାନସପ୍ରସୂତ । ଏକଦା ପୁତ୍ର ସ୍ନେହରେ ଅନ୍ଧହୋଇ ଧୃତରାଷ୍ଟ୍ର ଯେଉଁ ବୀଜ ବପନ କରିଥିଲା, ତାହା ଆଜ ମହାଦ୍ରୁମରେ ପରିଣତ ହୋଇଛି, ଆମର ଆଉ ବାଟ ନାହିଁ ।

ଜୟଦ୍ରଥ : ଦୋଷ ମାର୍ଜନା କରିବେ ମହାରାଜ । ଯୁଦ୍ଧରେ ସବୁ ଜଟିଳ ସମସ୍ୟାର ସମାଧାନ ମିଳିଯାଇବ । ଆପଣ ମାତୁଳ ଶକୁନି । କୁରୁପତି ଆପଣଙ୍କ ପ୍ରତୀକ୍ଷାରତ ।

ଶକୁନି : ମନସ୍ତାପ ପରିହାର କରନ୍ତୁ ମହାରାଜ । ମିଥ୍ୟାର ଆବରଣ ଛିନ୍ନକରି ସତ୍ୟର ସ୍ୱରୂପ ପ୍ରକଟିତ ହେଉ । ଯୁଦ୍ଧର ଆବଶ୍ୟକତାକୁ ନୈତିକତା ଆଳରେ ଏଡ଼ାଇ ହଆଯାଇ ନପାରେ ! କାରଣ ପରିବର୍ତ୍ତନହିଁ ସର୍ବଦା ସ୍ୱାଗତଯୋଗ୍ୟ । ଆସ ଜୟଦ୍ରଥ ।

.( ଉଭୟଙ୍କର ପ୍ରସ୍ଥାନ )

ଧୃତରାଷ୍ଟ୍ର : ମୁଁ ନିରୁପାୟ ସଞ୍ଜୟ । ମୋର ସ୍ୱାର୍ଥାନ୍ଧ ପୁତ୍ରସ୍ନେହ ହସ୍ତିନା ନଗରୀକୁ ଆଜ ଘୋର ବିପର୍ଯ୍ୟୟକୁ ଟାଣିନେଇଛି । ମୁଁ ନିର୍ବୋଧ, ନିଜ ସୃଷ୍ଟିର ସଂହାରକର୍ତ୍ତାରୂପେ ତାହାହିଁ ମୋର ପ୍ରାପ୍ୟ ।

(ମଞ୍ଚରୁ ଆଲୋକ ନିର୍ବାପିତ ହେଲା । ଆଲୋକର କ୍ଷୀଣ ରେଖାଟିଏ ପଡ଼ିଲା ଅନ୍ତରାଳରେ ଦଣ୍ଡାୟମାନ ସୂତ୍ରଧରଙ୍କ ମୁହଁରେ )

ସୂତ୍ରଧର : ସବୁଦିନପାଇଁ ତୁମର ଚକ୍ଷୁର ଆଲୋକ ଏମିତି ନିର୍ବାପିତ ଥାଉ ଧୃତରାଷ୍ଟ୍ର । ତା'ହେଲେ ବିଶ୍ୱର ସବୁ ଦୃଶ୍ୟ ତୁମକୁ ଏକ ଆଉ ଅଭିନ୍ନ ମନେହେବ । ଚକ୍ଷୁ ସ୍ଥାନ ଥିଲେ ତୁମେ ସେ ମର୍ମନ୍ତୁଦ ରୂପ ସହ୍ୟକରିପାରନ୍ତନାହିଁ । ତେଣୁ ଅର୍ଜୁନଙ୍କ ବିଷାଦଯୋଗ ଓ ଶ୍ରୀକୃଷ୍ଣଙ୍କ ଅମୃତବାଣୀ ତୁମପାଇଁ ମୂଲ୍ୟହୀନ ଧୃତରାଷ୍ଟ୍ର ।

( ଆଲୋକ ମ୍ଳାନ ହେଲା । ପରବର୍ତ୍ତୀ ଦୃଶ୍ୟରେ ମଞ୍ଚରେ କୃଷ୍ଣ ଓ ଅର୍ଜୁନ )

●

## ପଞ୍ଚମ ଦୃଶ୍ୟ

[ ବିଚଳିତ ପାର୍ଥଙ୍କୁ କୃଷ୍ଣ ସାନ୍ତ୍ୱନା ଦେଉଥିଲେ ]

ଅର୍ଜ୍ଜୁନ : କ୍ଷମାକର ଯଦୁପତି । ଏ ଯୁଦ୍ଧରେ ମୁଁ ଅଂଶଗ୍ରହଣ କରିବାକୁ ଅକ୍ଷମ । ମୋର ଅସ୍ତ୍ର ବିସର୍ଜ୍ଜନ ଦେଉଛି । ମୋତେ ଯୁଦ୍ଧ କବଳରୁ ମୁକ୍ତିଦେଇ ତୁମ ଚରଣରେ ଶେଷ ଆଶ୍ରୟ ଦିଅ ।

କୃଷ୍ଣ : ମୁଁ ଜାଣିଥିଲି ପାର୍ଥ । ତୁମର ମନୋବଳ ଭାଙ୍ଗି ପଡ଼ୁଛି । ତୁମ ସମ୍ମୁଖରେ କର୍ତ୍ତବ୍ୟର ଅପରନ୍ତ ପଥ । ଏଥିରୁ ବିଚ୍ୟୁତ ହେଲେ କାଳ ତୁମକୁ କ୍ଷମା ଦେବେନାହିଁ । ଏଠାରେ ସ୍ନେହ ମମତାର ବିଗ୍ରହ ଗୌଣ ।

ଅର୍ଜ୍ଜୁନ : ମୁଁ ନିରୂପାୟ ସଖା । ତୁମରି ସମସ୍ତ ପରାମର୍ଶ ଉପଦେଶ ମୋ ପାଇଁ ବ୍ୟର୍ଥ ହୋଇଛି । ମୁଁ ପୁନର୍ବାର ମୋହଗ୍ରସ୍ତ । ସ୍ନେହ ମମତାର ରଜ୍ଜୁରେ ଛନ୍ଦିହୋଇ ପଡ଼ିଛି । ମୁଁ ମୋର ନିୟନ୍ତ୍ରଣାଧୀନ ନୁହେଁ । ମୋତେ ନିୟନ୍ତ୍ରିତ କର ।

କୃଷ୍ଣ : ତୁମେ ମୋହପାଶରୁ ନିଜକୁ ମୁକ୍ତକର । ଜ୍ଞାନ ନେତ୍ରରେ ଦେଖ ଏ ବିଶ୍ୱବ୍ରହ୍ମାଣ୍ଡ କାହା ଇଚ୍ଛାରେ ପରିଚାଳିତ ହେଉଛି । ତୁମେ ସେହି ବାର୍ତ୍ତାର ନିର୍ଦ୍ଦେଶକୁ ସ୍ୱୀକାର କର । ତୁମେ ନିଜର ଅଧୀନ ନୁହଁ, ତୁମେ ସାମାନ୍ୟ ବାହକ ମାତ୍ର ।

ଅର୍ଜ୍ଜୁନ : ସଖା, ଭ୍ରାତା ଜ୍ଞାତି ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କଲାବେଳେ ଏକ ଗୋପନ ଦୁଃଖ ମୋତେ ମର୍ମନ୍ତୁଦ ଯନ୍ତ୍ରଣା ଦେଉଛି । ଏ ରକ୍ତପାତ ମୁଁ ସହ୍ୟ କରିପାରୁ ନାହିଁ ।

କୃଷ୍ଣ : ସଖା ପାର୍ଥ, ନ୍ୟାୟର ପକ୍ଷନେଇ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କଲେ ତୁମ ଯଶ ପ୍ରତିଷ୍ଠାଲାଭ କରିବ । ପ୍ରଥମତଃ ସ୍ଥିରଚିତ୍ତରେ ତୁମର କର୍ତ୍ତବ୍ୟ ନିରୂପଣ କର । ତା'ପରେ ସେଥିପ୍ରତି ନିଷ୍ଠାବାନ ହୁଅ । ଅନ୍ୟାୟ ବିରୁଦ୍ଧରେ ମୌନ ରହିଲେ ତୁମର ଧର୍ମ ହାନି ହେବ ।

ଅର୍ଜୁନ : କ୍ଷମାକରନ୍ତୁ ଯଦୁପତି । ଦାୟିତ୍ୱବୋଧର ବାହ୍ୱଦେଇ ମୁଁ କ୍ଷାନ୍ତି, ବନ୍ଧୁବର୍ଗଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିପାରିବି ନାହିଁ । ଏ ଯୁଦ୍ଧ ଯେପରି ମୋର ମାନବିକ ସଦ୍‌ଗୁଣଗୁଡ଼ିକର ଧ୍ୱଂସ ସାଧନ ନିମନ୍ତେ ଉଦ୍ଦିଷ୍ଟ ।

କୃଷ୍ଣ : ଭୁଲଯାଅନାହିଁ ପାର୍ଥ । ଏ ସମଗ୍ର ବିଶ୍ୱ ଏକ ରଙ୍ଗଶାଳା ମାତ୍ର । ଆମେ ସ୍ୱ ସ୍ୱ ଭୂମିକାରେ ଅବତୀର୍ଣ୍ଣ ହେଉ କେବଳ ଅଭିନୟ ପାଇଁ । ଅଭିନୟର ପରିସମାପ୍ତି ଘଟିଲେ ଆମକୁ ସ୍ୱ-ସ୍ଥାନକୁ ଫେରିଯିବାକୁ ହୁଏ ।

ସଞ୍ଜୟ : (ପ୍ରବେଶି) ଯଦୁପତି, ମୋର ସମ୍ମାନ ଗ୍ରହଣ କରନ୍ତୁ ।

କୃଷ୍ଣ : ହେ ସଞ୍ଜୟ, ତୁମେ ବ୍ୟକ୍ତିକର । ତୁମର ଦିବ୍ୟଚକ୍ଷୁ—ମହାଭାରତ ଯୁଦ୍ଧର ସମସ୍ତ ଅଲୌକିକ ଦୃଶ୍ୟ ତୁମର ଦୃଷ୍ଟିଗୋଚର ହେଉଥିବ । କୁହ, କେଉଁ କେଉଁ ବୀରଶ୍ରେଷ୍ଠମାନେ କେଉଁ କେଉଁ ଭୂମିକା ଗ୍ରହଣ କରୁଛନ୍ତି ।

ସଞ୍ଜୟ : ହେ ମାୟାଧର, ତୁମକୁ କେଉଁକଥା ଅବା ଅଗୋଚର । ମୋର ବ୍ୟାଖ୍ୟା ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ । ମୋର ଦୃଶ୍ୟ ଗୋଚରେ ହେଉଛି, ଏକ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ସବୁକିଛି ନିୟନ୍ତ୍ରିତ ହେଉଛି । ତାରି ବିନା ନିର୍ଦ୍ଦେଶରେ କୌଣସି ରଥୀ ପଦଟିଏ ମଧ୍ୟ ଆଗକୁ ଅଗ୍ରସର ହୋଇପାରୁନାହାନ୍ତି ।

ଅର୍ଜୁନ : ତୁମର ବାଣୀ ମୋର ହୃଦୟକୁ ବିଦ୍ଧ କରୁଛି । ସାମାନ୍ୟ ସ୍ୱାର୍ଥ ପାଇଁ ଏ ଭ୍ରାତୃବିବାଦ ଆମକୁ ମହାଭାରତ ଯୁଦ୍ଧକୁ ଟାଣି-ନେଉଛି । ଲକ୍ଷ ଲକ୍ଷ ବୀରମାନେ ଇଚ୍ଛାବିରୁଦ୍ଧରେ ସମରବହ୍ନିରେ ଝାସ ଦେଇଛନ୍ତି ।

କୃଷ୍ଣ : ତୁମେ ଭାବପ୍ରବଣ ହୋଇପଡୁଛ ପାର୍ଥ । ସଂଯମ ଓ ଆତ୍ମ-ନିୟନ୍ତ୍ରଣରେ ସିଦ୍ଧିଲାଭ ହୁଏ । ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଦାୟିତ୍ୱବୋଧକୁ ଜଳାଞ୍ଜଳି ଦିଅନାହିଁ । ବାସ୍ତବ ସତ୍ୟକୁ ସତ୍ୟଭାବରେ ଗ୍ରହଣ କରିନେଲେ ଦିବାଲୋକ ପରି ତୁମର ମାର୍ଗ ସୁସ୍ପଷ୍ଟ ଦିଶିବ ।

ସଞ୍ଜୟ : କୌରବମାନେ ଏ ଯୁଦ୍ଧର ଶେଷପରିଣତି ଚିନ୍ତା କରିପାରି ନାହାଁନ୍ତି । ସେମାନେ ବିଜୟୋଲ୍ଲାସରେ ଉନ୍ମତ୍ତ । ଦ୍ରୋଣ, କର୍ଣ୍ଣ, ଶଲ୍ୟ, କୃପାଚାର୍ଯ୍ୟ ପରି ତୁଙ୍ଗ ଯୋଦ୍ଧାମାନେ ଅଧର୍ମୀ କୌରବମାନଙ୍କ ପକ୍ଷ ସମର୍ଥନ କରୁଛନ୍ତି ।

କୃଷ୍ଣ : ଶୁଣ ପାର୍ଥ, ଏକ ନୂତନ ଯୁଗ ପ୍ରତିଷ୍ଠାପାଇଁ ଏ ଯୁଦ୍ଧ ଏକ ଆହ୍ୱାନ । ନିଷ୍ପେଷିତ, ଦୁର୍ବଳ, ମୂକ, ଅସହାୟ ଉପରେ ଯେଉଁମାନେ ଯୁଗଯୁଗଧରି ଅତ୍ୟାଚାର କରିଆସିଛନ୍ତି ସେହି ଅତ୍ୟାଚାରୀମାନଙ୍କର ଅନ୍ତର୍ଦ୍ଧାରେ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବାର ଅନ୍ତିମ ମୁହୂର୍ତ୍ତ ଉପଗତ । ସେହି ମହାନ ମନ୍ତ୍ରରେ ନିଜକୁ ଦୀକ୍ଷିତ କର ।

ଅର୍ଜୁନ : ଯଦୁପତି ମୋର ପ୍ରଣାମ ଗ୍ରହଣ କରନ୍ତୁ । ତୁମରି ଇଙ୍ଗିତରେ ଏ ବିଶ୍ୱବ୍ରହ୍ମାଣ୍ଡ ପରିଚାଳିତ । ମୋର ବା ଶକ୍ତି କେତେ, ସେହି ପ୍ରବଳ ଶକ୍ତି ବିରୁଦ୍ଧରେ ଦଣ୍ଡାୟମାନ ହୋଇ ପ୍ରତିରୋଧ କରିବାକୁ । ହେ ଯୁଗସ୍ରଷ୍ଟା, ମୋ ମନରୁ ଦ୍ୱନ୍ଦ୍ୱ ଦୂରକର । ମୁଁ ଦୁର୍ବଳମନା, ଶକ୍ତିହୀନ । ମୋତେ ତୁମ ଶକ୍ତିରେ ଶକ୍ତିମାନ କର । ତୁମ ତେଜରେ ତେଜୀୟାନ କର ।

କୃଷ୍ଣ : ଆସ ସଞ୍ଜୟ—ଧୃତରାଷ୍ଟ୍ରଙ୍କୁ ଧର୍ମଯୁଦ୍ଧର ବିବରଣୀ ତୁମେ ପ୍ରଦାନ କର । ଆସ ସଖା, ମୁଁ ବିଶ୍ୱରୂପ ଦେଉଛି; ତୁମର ଯୁଗଯୁଗର କ୍ଳାନ୍ତି ଅପସରିଯାଉ । ଏହି ଧର୍ମଯୁଦ୍ଧରେ ତୁମେ ବିଜୟଲାଭ କର । ଏହି ପାଞ୍ଚଜନ୍ୟର ନିନାଦ ତୁମ ଦେହରେ ଅସୀମ ଉଦ୍ଦୀପନା ଭରିଦେଉ ।

( ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଫୁଙ୍କିଛନ୍ତି—ମଞ୍ଚ ଅନ୍ଧାର ହୋଇ ଆସିଛି—ସାଇକ୍ଲୋମାରେ କୃଷ୍ଣଙ୍କ ବିଶ୍ୱରୂପ )

●

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ମଞ୍ଚରେ ସୂତ୍ରଧର ଏକାକୀ । ସେ ଯେମିତି ଜୀବନ ଯନ୍ତ୍ରଣାରେ ଜର୍ଜରିତ, ଯୁଦ୍ଧଧ୍ୱସ୍ତ ନିର୍ବୋଧ ବ୍ୟକ୍ତିଟିଏ । ତାର କଣ୍ଠରେ ଅସହାୟତାର ପ୍ରଚ୍ଛନ୍ନ ଆଭାଷ ]

ସୂତ୍ରଧର : ମୁଁ ଆଜି ମୋର ସ୍ୱତନ୍ତ୍ର ପରିଚୟ ବ୍ୟକ୍ତିସତ୍ତା ସବୁକିଛି ହରାଇ ନିଃସ୍ୱ ପାଲଟି ଯାଇଛି । ଅଦ୍ୟାବଧି ମୁଁ ଥିଲି ଏ ନାଟକର ସୂତ୍ରଧର । ସେମାନଙ୍କର ଦୁଃଖାନୁଭୂତି ମୋତେ ସ୍ପର୍ଶ କରିପାରୁ ନ ଥିଲେ ବି ମୁଁ ଥିଲି ସେମାନଙ୍କର ଏକାନ୍ତ ଘନିଷ୍ଠ । ଏକ ନିର୍ଦ୍ଦିଷ୍ଟ ଦୂରତ୍ୱ ଆମକୁ ବିଚ୍ଛିନ୍ନ କରିଦେଇଥିଲେ ବି ଏକ ଅନ୍ତରଙ୍ଗତାର ମମତ୍ୱବୋଧ ଆମକୁ ନିକଟତମ କରିଦେଇଛି । ବର୍ତ୍ତମାନ ସେ ଶୃଙ୍ଖଳ ଛିନ୍ନ । ମୁଁ ମୋର ନିଜସ୍ୱ ସଂଜ୍ଞା ହରାଇ ସେମାନଙ୍କ ଆତ୍ମା ସହ ଏକାତ୍ମ ହୋଇଯାଇଛି । ମୋ ଭିତରର ଯୁଗ ଯୁଗର ଅନ୍ୱେଷା, ଜିଜ୍ଞାସା, ଯେମିତି ଏକ ସାକାର ପ୍ରଶ୍ନବାଚୀଟିଏ ପାଲଟିଯାଇଛି । ଆଉ ସେମାନେ, ସେମାନଙ୍କର ଗ୍ଲାନି, ନୈରାଶ୍ୟବୋଧ, ହତାଶା, ସବୁ ଯେମିତି ଏକ ନିଷ୍କରୁଣ ଉତ୍ତରଟିରେ ରୂପାନ୍ତରିତ ହୋଇଯାଉଛି । ସମୟର କେଉଁ ସୀମାହୀନ ଦିଗନ୍ତରେ ଅନ୍ଧାର ଓ ଆଲୋକ ଏକ ଏବଂ ଅଭିନ୍ନ ହୋଇଗଲା ପରି ତନ୍ଦ୍ରା ଭିତରେ ସ୍ୱପ୍ନ ହଜିଗଲା ପରି ସେହି ସମ୍ଭାବିତ ପ୍ରଶ୍ନ, ସେହି ଜିଜ୍ଞାସାହୀନ ନିସ୍ତରଙ୍ଗ ଉତ୍ତର ସହ ସନ୍ତୁଳିତ ହୋଇଯାଉଛି ।

ମୁଁ ସୂତ୍ରଧର ପାଲଟିଯାଉଛି ନିଃସଙ୍ଗ ନଟଟିଏ । ସମସ୍ତ ପରିଚୟକୁ କେଉଁ ଉତ୍ତର ପୁରୁଷଙ୍କୁ ଅର୍ପଣକରି ହସ୍ତିନାନଗରୀ ରାଜପଥରେ ନିରୁଦ୍ଦିଷ୍ଟ ପ୍ରଶ୍ନଟିର ଠିକଣା ଖୋଜିବୁଲୁଛି । ମୋର ଅନିଚ୍ଛାସତ୍ତ୍ୱେ ମୁଁ ନାଟକଟିର ଚରିତ୍ର ପାଲଟି ଯାଇଛି । ମୋର ନୂତନ ନାମଟିଏ ମୋ ଉପରେ ଲଦି ଦିଆଯାଇଛି । ମୋ ନାଁ ବଳଦତ୍ତ । କାରଣ ଯୁଦ୍ଧର ଯୂପଖୁଣ୍ଟରେ ବଳି ପଡ଼ିବାକୁ ସଜବାଜ ହେଉଥିବା ନିରୀହ ଜୀବଟିଏ ।

( ସୂତ୍ରଧରର ନାମ ଏଥର ବଳଦତ୍ତ । ସେ ଅନ୍ତର୍ହିତ । ମଞ୍ଚରେ ଆସୀନ । କୁରୁରାଜ ଦୁର୍ଯ୍ୟୋଧନ, ଶକୁନି ଓ ଜୟଦ୍ରଥ ମନ୍ତ୍ରଣାରତ । ଦୂରରୁ ଶୁଭୁଥିଲା "ଜୟ କୁରୁପତି ଦୁର୍ଯ୍ୟୋଧନଙ୍କ ଜୟ ।" )

ଦୁର୍ଯ୍ୟୋଧନ : ବନ୍ଧୁ ଜୟଦ୍ରଥ, ମାତୁଳ ଶକୁନି, ସେହି ଅପମାନର ତୀବ୍ର ଜ୍ୱାଳା ମୁଁ ସହ୍ୟ କରିପାରୁନି । ପାଣ୍ଡବମାନଙ୍କୁ ସମୁଚିତ ଶାସ୍ତି ଦେବା ନିମନ୍ତେ କୁରୁକ୍ଷେତ୍ର ଯୁଦ୍ଧ ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ୁଛି । କୃଷ୍ଣବଳରେ ବଳୀୟାନ ହେତୁ ପାଣ୍ଡବମାନଙ୍କର ଉଦ୍ଧତ ଅହମିକା ଆକାଶ ସ୍ପର୍ଶ କରିଛି । ଏଥର ଆଗୁ ବଳୟର ଆବଶ୍ୟକତା ଅନୁଭୂତ ହୋଇଛି ।

ଜୟଦ୍ରଥ : ପାଣ୍ଡବମାନେ ନିଜର ବୁଦ୍ଧି, ବିବେକ ସମସ୍ତ ବଳିଦେଇ କୃଷ୍ଣଙ୍କ ଦ୍ୱାରା ପରିଚାଳିତ ହେଉଛନ୍ତି । ହସ୍ତିନାନଗରୀର ସ୍ୱର୍ଣ୍ଣ ସିଂହାସନର ମୋହ ସେମାନଙ୍କୁ ସ୍ୱପ୍ନବିଭୋର କରିଛି ।

ଶକୁନି : ମାୟାବୀ କୃଷ୍ଣଙ୍କର ମାୟାବ୍ୟୂହ ଭେଦକରିବାକୁ ସମର୍ଥ ହୋଇପାରିଲେ କୌରବମାନଙ୍କର ବିଜୟ ସୁନିଶ୍ଚିତ ହେବ । ସେମାନଙ୍କର ବିଶ୍ୱାସ ତୃତୀୟ ପାଣ୍ଡବ ପାର୍ଥପ୍ରତିମ ଯୋଦ୍ଧା ତ୍ରିଭୁବନରେ ବିରଳ । ପାର୍ଥର ଗର୍ବକୁ ଖର୍ବ କରିପାରିଲେ ପାଣ୍ଡବମାନେ ଅଚିରେ ପରାଜୟ ବରଣ କରିବେ ।

( ପ୍ରହରୀର ପ୍ରବେଶ ଓ ସମ୍ମାନ ପ୍ରଦର୍ଶନ )

ପ୍ରହରୀ : ଜଣେ ଆଗନ୍ତୁକ ମହାରାଜ କୁରୁପତିଙ୍କ ଦର୍ଶନାଭିଳାଷୀ ।

ଦୁର୍ଯ୍ୟୋଧନ : ତାଙ୍କର ଆଗମନ ନିମନ୍ତେ ଅନୁମତି ପ୍ରଦାନ କରାଗଲା ।

( ପ୍ରହରୀର ପ୍ରସ୍ଥାନ । ଆସିଛି ସୂତ୍ରଧର । ତାର ନୂତନ ନାମକରଣ ହୋଇଛି ବଳଦତ୍ତ ଭାବରେ )

ବଳଦତ୍ତ : ଜୟ ମହାରାଜ କୁରୁପତିଙ୍କ ଜୟ । ମହାରାଜ ! ମୋର ପ୍ରଣାମ ଗ୍ରହଣ କରନ୍ତୁ । ( ଦୁର୍ଯ୍ୟୋଧନଙ୍କୁ ପ୍ରଣାମ ଜଣାଉଛି )

ଦୁର୍ଯ୍ୟୋଧନ : ଅବିଳମ୍ବେ ତୁମର ଆଗମନର କାରଣ ବ୍ୟକ୍ତ କର ।

ବଳଦତ୍ତ : ମନରେ ଅସୁମାରି ପ୍ରଶ୍ନ ଧରି ମୁଁ ମହାରାଜଙ୍କୁ କୃପାପ୍ରାର୍ଥୀ । ମହାରାଜ ସଦୟ ହେଲେ...

ଦୁର୍ଯ୍ୟୋଧନ : ନିଃସଙ୍କୋଚରେ ତୁମର ସମସ୍ତ ଅଭିଳାଷ ପ୍ରକାଶ କର । ମୋର ସାଧାଶକ୍ତି ନ ହୋଇଥିଲେ ତାହା ନିଶ୍ଚୟ ପୂରଣ ହେବ ।

ବଳଦତ୍ତ : ମହାରାଜ ପରମ ଦୟାଳୁ । କୁରୁଯୁଦ୍ଧର ଆରମ୍ଭରେ ମୁଁ ମୋର ଏକମାତ୍ର ସନ୍ତାନକୁ ଯୁଦ୍ଧାନଳରେ ଆହୁତି ଦେଇଛି । ମୁଁ ତାର ଜୀବନ ଫେରିପାଇବା ନିମନ୍ତେ ମହାରାଜଙ୍କୁ କୃତାଞ୍ଜଳିପୂର୍ବକ ପ୍ରାର୍ଥନା କରୁଛି ।

ଦୁର୍ଯ୍ୟୋଧନ : ଅବାସ୍ତବ ଇଚ୍ଛାର ବଶବର୍ତ୍ତୀ ହେଲେ ଦୁଃଖର ବୋଝ ସହସ୍ରଗୁଣ ବୃଦ୍ଧି ପାଏ । ତୁମର ପ୍ରଥମ ଇଚ୍ଛା ପୂରଣ କରିବାକୁ ମୁଁ ସମ୍ପୂର୍ଣ୍ଣ ଅସମର୍ଥ । ଆଉ ଯଦି କୌଣସି ପ୍ରାର୍ଥନା ଥାଏ...

ବଳଦତ୍ତ : ଏ ଯୁଦ୍ଧରେ ମୋର ଏକମାତ୍ର ନୟନର ମଣିକୁ ବିସର୍ଜ୍ଜନ ଦେଇ ମୁଁ ସର୍ବସ୍ୱହୀନ ହୋଇପଡ଼ିଛି । ଏ ଯୁଦ୍ଧ ଯଦି ଗୋଟିଏ ଜୀବନ ଫେରାଇ ଦେବାକୁ ଅସମର୍ଥ, କେଉଁ ଅଧିକାରରେ ଶତ ଶତ ଜୀବନକୁ ଛଡ଼େଇ ନେବାପାଇଁ ଆଜି ସଙ୍କଳ୍ପବଦ୍ଧ । ତାର ଉତ୍ତର ମୋ ପାଇଁ ଏବେବି ଅଜଣା ରହିଯାଇଛି ।

ଦୁର୍ଯ୍ୟୋଧନ : ଯୁଦ୍ଧର ଗଭୀର ତତ୍ତ୍ୱ ତୁମେ ଉପଲବ୍ଧି କରିପାରିବ ନାହିଁ । ହସ୍ତିନାନଗରୀରୁ ଅସ୍ଥିରତା ଦୂର କରି ଶାନ୍ତି ସ୍ଥାପନ ପାଇଁ ଯୁଦ୍ଧର ଆବଶ୍ୟକତା ଏକାନ୍ତ ଅନୁଭୂତ ହୋଇଛି । ହସ୍ତିନା-ନଗରୀରେ ନୂତନ ସୂର୍ଯ୍ୟୋଦୟ ହେବ । ଏକ ଦିବ୍ୟ ମୁହୂର୍ତ୍ତରେ ଦିବ୍ୟାଲୋକରେ ଏ ରାଜ୍ୟ ଉଦ୍ଭାସିତ ହୋଇଉଠିବ ।

ବଳଦତ୍ତ : ଯୁଦ୍ଧର ଅସୀମ ଅନ୍ଧକାର ଗହ୍ୱରରେ ସହସ୍ର ସହସ୍ର ସୂର୍ଯ୍ୟ ଅସ୍ତମିତ ହେବେ । ହସ୍ତିନାନଗରୀ ଏକ ପ୍ରାଣହୀନ ବନ୍ଧ୍ୟାରାଜ୍ୟରେ ପରିଣତ ହେବ ।

ଶକୁନି : ହତୋତ୍ସାହ ନ ହୋଇ ସୌଭାଗ୍ୟଲକ୍ଷ୍ମୀଙ୍କୁ ସମ୍ବର୍ଦ୍ଧନା ଜଣାଅ । ତୁମ ଦୁଃଖର ଅଶ୍ରୁ ବାଷ୍ପୀଭୂତ ଘଟିବ ।

ବଳଦତ୍ତ : ଅସମ୍ଭବ ଏକ ସମ୍ରାଟର ଖିଆଲି ସ୍ୱପ୍ନ ପାଇଁ ଏ ରାଜ୍ୟରୁ ସୁଖ ସମୃଦ୍ଧିର ଅକାଳ ବିୟୋଗ ଘଟିବାକୁ ଯାଉଛି । ମୋର ନିରୁଦ୍ଦିଷ୍ଟ ପ୍ରଶ୍ନଟିର ଯନ୍ତ୍ରଣାକୁ ବହନକରି ମୁଁ ବ୍ୟର୍ଥମନରେ ଫେରିଯାଉଛି ।
( ବଳଦତ୍ତ ପ୍ରସ୍ଥାନ )

ଦୁର୍ଯ୍ୟୋଧନ : ଏହି ଅପରିଚିତ ବ୍ୟକ୍ତିର ଅସଂଲଗ୍ନ ଫଳାଫଳ ମୋ ମନଭିତରେ ଏକ ନୀରବ ପ୍ରତିଧ୍ୱନି ତୋଳୁଛି । ଏହାକୁ ଅବାନ୍ତର କହି ଉପେକ୍ଷା କରି ନ ଯାଇପାରେ ।

ଶକୁନି : ଅଳୀକ ଚିନ୍ତା ପରିହାର କରନ୍ତୁ କୁରୁପତି । ଯାହା ବିଧିନିର୍ଦ୍ଦିଷ୍ଟ ତାହାକୁ କେହି ଭଙ୍ଗ କରିପାରିବେ ନାହିଁ । ମୃତ୍ୟୁଠାରୁ ମୃତ୍ୟୁର ଆଶଙ୍କା ଅଧିକ ଯନ୍ତ୍ରଣାଦାୟକ । ଏହାକୁ ଅସ୍ୱୀକାର କରି ନ ଯାଇପାରେ । ଏ ରାଜ୍ୟକୁ ଯେଉଁ ଅନିଶ୍ଚିତତା ଗ୍ରାସ କରିଛି, ଯୁଦ୍ଧହିଁ ତାର ଏକମାତ୍ର ସମାଧାନ ।

ଜୟଦ୍ରଥ : ମହାରାଜ ଧୃତରାଷ୍ଟ୍ର ବୋଧହୁଏ ଆଗମନ କରୁଛନ୍ତି । ( ଧୃତରାଷ୍ଟ୍ର ଜଣେ ବ୍ୟକ୍ତି ସହ ପ୍ରବେଶ । ଶକୁନି, ଦୁର୍ଯ୍ୟୋଧନ, ଜୟଦ୍ରଥ ପ୍ରଣାମ କଲେ । ଧୃତରାଷ୍ଟ୍ର ଆଶୀର୍ବାଦ କଲେ । ଲୋକଟି ଚାଲି-ଯାଉଛି··· )

ଧୃତରାଷ୍ଟ୍ର : ବତ୍ସ ଦୁର୍ଯ୍ୟୋଧନ, ଜୟଦ୍ରଥ ମୋର ଶୁଭାଶୀର୍ବାଦ ଗ୍ରହଣ କର । ପ୍ରିୟ ଶକୁନି, ରାଜ୍ୟର ସମାଚାର ବ୍ୟକ୍ତ କର ।

ଶକୁନି : ପୂର୍ବେ ଋଷିଆଶ୍ରମ ସଦୃଶ୍ୟ ଏ ରାଜ୍ୟରେ ଶାନ୍ତିଶାନ୍ତି ବିରାଜମାନ କରୁଥିଲା, ମାତ୍ର ପାଣ୍ଡବମାନଙ୍କର ଅହେତୁକ ଈର୍ଷା ଏ ରାଜ୍ୟପାଇଁ ଅମଙ୍ଗଳର କାରଣ ହୋଇ ଦେଖାଦେଉଛି ।

ଧୃତରାଷ୍ଟ୍ର : ସତ୍ୟର ଅପଳାପ କାହାପାଇଁ ଶୁଭଙ୍କର ନୁହେଁ ବତ୍ସ । ଧୃତରାଷ୍ଟ୍ରର ଅନ୍ଧ ଅପତ୍ୟସ୍ନେହ ଏ ରାଜ୍ୟକୁ ଯୁଦ୍ଧର ବିଭୀଷିକାକୁ ଟାଣିଆଣିଛି । ମାତ୍ର ସଞ୍ଜୟର ଦିବ୍ୟଚକ୍ଷୁରେ ମୋର ଗୋଚର ହୋଇଛି, ହସ୍ତିନାନଗରୀ ଅଚିରେ ଏକ ମୃତ ନଗରୀରେ ପରିଣତ ହେବ ।

ଶକୁନି : ପାଣ୍ଡବ, କୌରବମାନଙ୍କ ମଧ୍ୟରେ ଯେଉଁ ବିଦ୍ବେଷର ଅଲଙ୍ଘ୍ୟ ପ୍ରାଚୀର ଦଣ୍ଡାୟମାନ ହୋଇଛି, ଏ ଯୁଦ୍ଧ କେବଳ ତାର ସମାଧାନର ସ୍ଥାୟୀ ମାର୍ଗ ପ୍ରଦର୍ଶନ କରିପାରିବ । ରାଜ୍ୟ ଲିପ୍‌ସାରେ ପାଣ୍ଡବମାନେ ମୋହଗ୍ରସ୍ତ । ସେମାନଙ୍କ ମୋହଭଙ୍ଗ ପାଇଁ ଏହା ବ୍ୟତୀତ ବିକଳ୍ପ ପନ୍ଥା ନାହିଁ ।

ଧୃତରାଷ୍ଟ୍ର : ଧୃତରାଷ୍ଟ୍ର ତାର ଅତୀତର ଦୁଷ୍କର୍ମ ପାଇଁ ମନସ୍ତାପ କରୁଛି । ରାଜା ସର୍ବଦା ରାଜ୍ୟର ମଙ୍ଗଳାକାଙ୍‌କ୍ଷୀ—ରାଜ୍ୟର ହିତଦୃଷ୍ଟିରୁ ଯୁଦ୍ଧ ସର୍ବଦା ବର୍ଜ୍ଜନୀୟ ।

ଦୁର୍ଯ୍ୟୋଧନ : ପାଣ୍ଡବମାନେ ସେମାନଙ୍କ ଛଳଚାତୁରୀରେ ଯେଉଁ ଅସୂୟା ଓ ବିଦ୍ବେଷର ବହ୍ନି ପ୍ରଜ୍ଜ୍ୱଳିତ କରିଛନ୍ତି, ତାହା ଆଜି ପ୍ରଚଣ୍ଡ ଦାବାଗ୍ନିର ରୂପ ଧାରଣ କରି ସମଗ୍ର ରାଜ୍ୟକୁ ଆଚ୍ଛାଦିତ କରିଛି । ଯୁଦ୍ଧବିନା ଏହାକୁ ନିର୍ବାପିତ କରାଯାଇପାରିବନା । ଏ ସିଂହାସନ ମୋ ପାଇଁ ସମସ୍ତ ପାର୍ଥିବ ଆକର୍ଷଣ ହରାଇଛି । ରାଜ୍ୟବାସୀଙ୍କ ମଙ୍ଗଳପାଇଁ ମୁଁ ଯୁଦ୍ଧରେ ବ୍ରତୀ ହୋଇଛି ।

ଧୃତରାଷ୍ଟ୍ର : ଅନୁଶୋଚନାର ମୁହୂର୍ତ୍ତ ଅତିକ୍ରାନ୍ତ ହୋଇଛି । ଏହାହିଁ ବୋଧେ ବିଧି ନିର୍ଦ୍ଦିଷ୍ଟ । ବ୍ୟର୍ଥ ମନରେ ମୁଁ ଫେରିଯାଉଛି । ( ଜଣେ ବ୍ୟକ୍ତି ଧୃତରାଷ୍ଟ୍ରଙ୍କୁ ଧରି ଧରି ନେଉଛନ୍ତି, ଧୃତରାଷ୍ଟ୍ରଙ୍କ ପ୍ରସ୍ଥାନ । )

ଦୁର୍ଯ୍ୟୋଧନ : ହାଃ-ହାଃ-ହାଃ ! ସ୍ନେହାନ୍ଧ ଜନକ ସନ୍ତାନର ଅନାଗତ ବିପଦ ଆଶଙ୍କାରେ ବିଚଳିତ । ଏହା ବୋଧହୁଏ ତାଙ୍କର ଭାବନାତୀତ । ଏ ସଂଗ୍ରାମରେ ବିଜୟୀ ହେଲେ ତାଙ୍କ ପୁତ୍ର ଦୁର୍ଯ୍ୟୋଧନର ଗୌରବ-ଗାଥା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଆଉ ମୁଁ ପରାଜୟ ବରଣ କଲେ, ବୀରର ମର୍ଯ୍ୟାଦାବନ୍ତ

ସମ୍ମାନରେ ବିଭୂଷିତ ହୋଇ ଅମର ହେବ । ଆସ ମିତ୍ର ଜୟଦ୍ରଥ, ଆସନ୍ତୁ ମାତୁଳ ଶକୁନି, ଆସନ୍ନାକାଳର ଯୁଦ୍ଧପାଇଁ ଆମକୁ ପ୍ରସ୍ତୁତ ହେବାକୁ ପଡ଼ିବ ।

( ଜୟଦ୍ରଥ ଓ ଦୁର୍ଯ୍ୟୋଧନଙ୍କ ପ୍ରସ୍ଥାନ )

ଶକୁନି : ହାଃ-ହାଃ-ହାଃ···ବିଚଳିତ ହୁଅନାହିଁ । କୁରୁପତି ଧୃତରାଷ୍ଟ୍ରଙ୍କ ନିର୍ମମ ନିଷ୍ଠୁର ସତ୍ୟର ବାଣୀକୁ ତୁମେ ଗ୍ରହଣ କଲ ନାହିଁ । ମାତା ଗାନ୍ଧାରୀଙ୍କ ଆକୁଳ ନିବେଦନ ତୁମ ନିକଟରେ ନିଷ୍ଫଳ ହେଲାସି ମାତ୍ର । ମହାକାଳର ଏହି ଭୟଙ୍କର ଖେଳରୁ କାହାର ନିସ୍ତାର ନାହିଁ । ଆଉ ଶକୁନି ? ହାତରେ ଘୃଣ୍ୟର ପଶାକାଠି ଧରି ସାରାଜୀବନ ହେଉଛି ଗୋଟିଏ ଖେଳ ଖେଳି ଚାଲିଥିବ । ଅଥଚ ସେ ଇଚ୍ଛାକଲେ ମଧ୍ୟ ସେ ଖେଳ ବନ୍ଦ ହେବନି । (କାନ୍ଦି କାନ୍ଦି) ଶେଷକୁ ଏହି ନିର୍ବୋଧ ପ୍ରାଣୀଟିର ଯନ୍ତ୍ରଣା କେହି ବୁଝିପାରିଲେ ନାହିଁ । ତାର ଅନିଚ୍ଛାସତ୍ତ୍ୱେ ସେ ପାଲଟିଯାଇଛି ମହାକାଳ ହାତରେ ମହାଭାରତର ଏକ କ୍ରୀଡ଼ାଯନ୍ତ୍ର ଚରିତ୍ର ।

(ହସି ଉଠିଛି—କ୍ରମଶଃ ମଞ୍ଚ ଅନ୍ଧାର ହୋଇଛି ।)



# ଦ୍ୱିତୀୟ ଦୃଶ୍ୟ

[ ଆସିଛି ସୂତ୍ରଧର । ଯାହାର ବର୍ତ୍ତମାନ ପରିଚୟ ବଳଦତ୍ତ । ]

ବଳଦତ୍ତ : କୁରୁପକ୍ଷଙ୍କଠାରୁ ବ୍ୟର୍ଥ ମନୋରଥରେ ଫେରିଆସିଲି । ଯୁଦ୍ଧର ନିଆଁ ସମସ୍ତଙ୍କୁ ଗ୍ରାସ କରିଛି । ମୁଁ ଅକିଞ୍ଚନ ମାତ୍ର । ମୁଁ ଫେରାଇ ଆଣିପାରିଲି ନାହିଁ କୁରୁପକ୍ଷଙ୍କୁ । କ'ଣ ପାଇଁ ଏମିତି ଏକ ଅର୍ଥହୀନ ଜୀବନ ଯୁଦ୍ଧରେ ସେମାନେ ମାତିଉଠିଛନ୍ତି ? ତାର ଉତ୍ତର ମଧ୍ୟ ସେମାନଙ୍କୁ ଅଜଣା । ଏଥର ମୋର ଯାତ୍ରା ପାଣ୍ଡବ ଶିବିରକୁ । ମନର ଅମୀମାଂସିତ ପ୍ରଶ୍ନର ଶେଷ ଉତ୍ତର ହୁଏତ ସେଇଠି ମିଳିଯାଇପାରେ ।

( ଦେଖାଗଲା ଅପରପାର୍ଶ୍ୱରେ ଚିନ୍ତାମଗ୍ନ ଅର୍ଜୁନ )

ଅର୍ଜୁନ : ଆଃ... ମହାଭାରତର ଏହି କ୍ରାନ୍ତିକାଳୀ ସମର ଯେମିତି ଅନେକ ଅନାଗତ ପ୍ରଶ୍ନ । ଅସରନ୍ତି ଉତ୍ତରର ଚକ୍ରବ୍ୟୂହ । ଅସୁମାରି ଯନ୍ତ୍ରଣାର ନାଗପାଶ ।

( ଆସିଛନ୍ତି ବଳଦତ୍ତ )

ବଳଦତ୍ତ : ହେ ତୃତୀୟ ପାଣ୍ଡବ ବୀରଶ୍ରେଷ୍ଠ ପାର୍ଥ, ମୋର ଭକ୍ତିଭରା ପ୍ରଣାମ ଗ୍ରହଣ କରନ୍ତୁ ।

ଅର୍ଜୁନ : କିଏ ତୁମେ ? ଯେତେବେଳେ ହସ୍ତିନାନଗରୀର ଭାଗ୍ୟାକାଶରେ ଅଶାନ୍ତ ଧୂମକେତୁ ବିଦ୍ରୂପ କରୁଛି, ସେତେବେଳେ ତୁମର ଆକସ୍ମିକ ଆବିର୍ଭାବ ମୋ ମନରେ ଆଶାର କ୍ଷୀଣ ବର୍ତ୍ତିକା ଜାଳି-ଦେଇଛି । ତୁମର ପରିଚୟ ଓ ଆଗମନର ଅଭିପ୍ରାୟ ବ୍ୟକ୍ତ କରି ମୋ ଅଶାନ୍ତ ମନକୁ ଶାନ୍ତ କର ।

ବଳଦତ୍ତ : ମୁଁ ଆଜି ମୋର ନିଜସ୍ୱ ପରିଚୟ ହରାଇ କ୍ରମଶଃ ପରିଚୟହୀନ ଜଡ଼ବସ୍ତୁଟିଏ ପାଲଟିଯାଉଛି । ମୁଁ ଏକ ଯନ୍ତ୍ରଣାବଦ୍ଧ ଅସହାୟ ଆତ୍ମା ।

ଅର୍ଜ୍ଜୁନ : ତୁମର ଧୀମତ୍ତା ମୋତେ ମୁଗ୍ଧ କରୁଛି । ତୁମ ସହ ମୋର ଏହି ସାକ୍ଷାତ ଆକସ୍ମିକ ହେଲେ ବି ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ...

ବଳଦତ୍ତ : ମୋର ମନର କଥା ବ୍ୟକ୍ତ କରିବାକୁ ମୁଁ ସମ୍ପୂର୍ଣ୍ଣ ଅପାରଗ । ମୋର ଭାବନା ମୋର ଭାଷାର କର୍ତ୍ତୃତ୍ୱ ହରାଇଛି । ମୁଁ ଆଜି କାହାର ବିଶ୍ୱାସଭାଜନ ନୁହେଁ । ମୋର ଉପଲବ୍ଧି ମୋର ଦୁଃଖର କାରଣ ହୋଇଛି ।

ଅର୍ଜ୍ଜୁନ : ତୁମର ଦୁଃଖ କ'ଣ ? ମୋର ସାଧ୍ୟାତୀତ ନ ହେଲେ ତାହା ପୂରଣ କରିବାଦିଗରେ ନିଶ୍ଚୟ ବ୍ରତୀ ହେବି ।

ବଳଦତ୍ତ : ମୋ ଦୁଃଖ, ମୋ ଯନ୍ତ୍ରଣା ସମଗ୍ର ବିଶ୍ୱର ଦୁଃଖ ଆଉ ଯନ୍ତ୍ରଣାର ରୂପ ନେଇଛି । ସମସ୍ତେ ଆଜି ତ୍ରସ୍ତ ଆଉ ଶଙ୍କିତ । ସମସ୍ତେ ସେହି ପ୍ରଶ୍ନର ବିଶ୍ୱସ୍ତ କ୍ରୀତଦାସ । ଏକ ଭୟାବହ ସଙ୍କଟ ପରି ସେହି ନିଷ୍ଠୁର ସତ୍ୟର ସମ୍ମୁଖୀନ ହେବାପାଇଁ ସେମାନେ ସାହସଚ୍ୟୁତ ।

ଅର୍ଜ୍ଜୁନ : ଅର୍ଜ୍ଜୁନ ପ୍ରତି ଆସ୍ଥାଭାଜନ ହୁଅ । ମୋର ବିଶ୍ୱାସ, ତୁମ ମନର ଆଶଙ୍କା, ଦ୍ୱନ୍ଦ୍ୱ ଦୂର କରିବାରେ ମୋର ପ୍ରୟାସ ବ୍ୟର୍ଥ ହେବନାହିଁ ।

ବଳଦତ୍ତ : ସେ ଏକ ନିଷ୍ଠୁର ପ୍ରଶ୍ନ । ଉପଲବ୍ଧି ବିନା ତାହା ବାତୁଳର ପ୍ରଳାପ ପରି ପ୍ରତୀୟମାନ ହୁଏ । ମୋ ପାଇଁ ତାହା ଏକ ଚରମ ସତ୍ୟ । କୁରୁଯୁଦ୍ଧରେ ଯେଉଁମାନେ ପ୍ରାଣ ବିସର୍ଜ୍ଜନ କରିଛନ୍ତି ; ସେମାନଙ୍କୁ ପୁନର୍ବାର ଜୀବନ୍ୟାସ ଦେବାନିମନ୍ତେ ମୁଁ ତୃତୀୟ ପାଣ୍ଡବଙ୍କୁ ଆକୁଳ ପ୍ରାର୍ଥନା କରୁଛି ।

ଅର୍ଜ୍ଜୁନ : ବୃନ୍ତଚ୍ୟୁତ ପୁଷ୍ପ ପୁନର୍ବାର ବୃନ୍ତକୁ ଫେରିଯାଇ ବୃକ୍ଷର ଶୋଭାବର୍ଦ୍ଧନ କରିପାରେନା । କାଳର ଗତିକୁ ପ୍ରତିରୋଧ କରି ଏକ ନୂତନ ସୃଷ୍ଟିର ସ୍ୱପ୍ନ ଦେଖିବା କେବଳ ଅଳୀକ କଳ୍ପନା ମାତ୍ର ।

ବଳଦତ୍ତ : ତା'ହେଲେ ମୋ ବ୍ୟଥାର ଆଦିଅନ୍ତ ନାହିଁ । କୁରୁଯୁଦ୍ଧର କ୍ଷତ ସାରାଜୀବନ ପାଇଁ ଏକ ରକ୍ତାକ୍ତ ସ୍ମୃତି ହୋଇ ମୋତେ ଯନ୍ତ୍ରଣା ଜର୍ଜ୍ଜରିତ କରିବ । ଏକ ସୀମାହୀନ ମନସ୍ତାପର ଦୁଃଖନଦୀକୁ ପାରିହେବାପାଇଁ ମୁଁ ସାରାଜୀବନ ଘୂରିବୁଲୁଥିବି ସେହି ନିର୍ଜ୍ଜନତାର

କ୍ଷଣେ କ୍ଷଣେ ଅନ୍ୟ ଥରଟିଏ ପାଇଁ ସେମାନଙ୍କର ପରିଚିତ ପଦଧ୍ୱନି ମୁଁ ଶୁଣିପାରିବ ନାହିଁ ।

ଅର୍ଜୁନ : ଆଃ, ମୋ ମନତଳର ଅନୁଚାରିତ ପ୍ରଶ୍ନ ତୁମ କଣ୍ଠରେ ଯେପରି ନୀରବ ପ୍ରତିଧ୍ୱନି ତୋଳୁଛି ! ତୁମରି ପରି ଏ ଯୁଦ୍ଧକୁ ମୁଁ ମଧ୍ୟ ଦିନେ ପ୍ରତ୍ୟାଖ୍ୟାନ କରୁଥିଲି । ଏ ରାଜ୍ୟ ମୋ ପାଇଁ ନିରର୍ଥକ ଥିଲା, ଅଥଚ କେଉଁ ଦିବ୍ୟନିର୍ଦ୍ଦେଶରେ ରକ୍ତପାତକୁ ବିନା ଦ୍ୱିଧାରେ ଗ୍ରହଣ କରିନେଲି ତାହା ମୋ ପାଇଁ ଅଜ୍ଞାତ ରହିଗଲା । ତୁମେ କେତୋଟି ମୁହୂର୍ତ୍ତ ଅପେକ୍ଷାକର, ଯଦୁପତି କୃଷ୍ଣ ତୁମ ପ୍ରଶ୍ନର ଉତ୍ତର ଦେବାପାଇଁ ଏକମାତ୍ର ସମର୍ଥ ପୁରୁଷ । ମୁଁ ତାଙ୍କ ନିକଟରୁ ଅତିଶୀଘ୍ର ଫେରିଆସୁଛି ।

( ଅର୍ଜୁନଙ୍କ ପ୍ରସ୍ଥାନ । ଆସିଛନ୍ତି ଉତ୍ତରା ଓ ଅଭିମନ୍ୟୁ )

ଅଭିମନ୍ୟୁ : ତୁମେ କିଏ ? କାହାକୁ ଅପେକ୍ଷା କରିଛ ?

ବଳଦତ୍ତ : ଜାଣେନା···

ଉତ୍ତରା : ଅର୍ଥାତ୍ ?

ବଳଦତ୍ତ : ହୁଏତ ଏକ ଅନାଗତ ମୁହୂର୍ତ୍ତରେ ସାକ୍ଷାତ୍ ହୋଇଯିବ ତାଙ୍କ ସହ । ସେଦିନ ନିଭୃତ ମନର ସମସ୍ତ ଦ୍ୱାର ଆପଣାଛାଏଁ ମୁକ୍ତ ହୋଇଯିବ । ତା'ପରେ ସବୁ ପ୍ରଶ୍ନ ସବୁ ଜିଜ୍ଞାସାର ଅବସାନ ଘଟିବ ।

ଅଭିମନ୍ୟୁ : ବାଃ, ନିଜପାଇଁ ଏକ ନିବୁଜ ଦୁର୍ଗଟିଏ ତିଆରିକରି ତାହାରି ଭିତରେ ନିଜର ଉତ୍ତର ପାଇଁ ନିଜେ ବାଟପିଟିଉଠୁଛ । ଚମତ୍କାର ! (ହସିଲେ)

ଉତ୍ତରା : ନିଜର ସ୍ୱଗତଃ ଭିତରେ ନିଜ ପ୍ରଶ୍ନର ଉତ୍ତର ଖୋଜିବୁଲୁଛ ? ଅର୍ଥହୀନ ।

ଅଭିମନ୍ୟୁ : ଅବିଳମ୍ବେ ତୁମର ସମସ୍ତ ଉତ୍କଣ୍ଠାର ଅବସାନ ଘଟିବ । କୁରୁଯୁଦ୍ଧର ସମାପ୍ତି ପରେ ଯାହା ତୁମକୁ ଆଜି ଅସ୍ପଷ୍ଟ ଓ ଦୁର୍ବୋଧ ମନେହେଉଛି, ତାହା ଦିବାଲୋକ ପରି ସ୍ପଷ୍ଟ ଓ ଉଜ୍ଜ୍ୱଳତର ହୋଇଯିବ ।

ବଳଦତ୍ତ : ମୋତେ କୁରୁଯୁଦ୍ଧର ପ୍ରମତ୍ତ ସ୍ରୋତରେ ଭସାଇ ନିଅ ନାହିଁ । ଯୁଗ ଯୁଗ ପାଇଁ ବିଗତଶ୍ରୀ ହୋଇ ମୁଁ ଅଥର୍ବଟିଏ ପାଲଟିଯିବି । ଅତୀତ ମୋ ପାଇଁ ମୃତ, ଆଗାମୀକାଲି ମୋ ପାଇଁ ଏକ ଅର୍ଥହୀନ ବିଖଣ୍ଡିତ ସ୍ୱପ୍ନ । ବର୍ତ୍ତମାନ ମୋ ପାଇଁ ଏକ ରଙ୍ଗହୀନ କ୍ଲାନ୍ତ ଅପରାହ୍ନ । ମୁଁ ମୁକ୍ତ ରହେଁ !

ଉତ୍ତରା : ଉତ୍ତର ଦିଅ କୁମାର ! ତାର ତୀବ୍ର ଜ୍ୱାଳାରୁ ଦଂଶନକୁ ଉପହାସ କରନାହିଁ ।

ଅଭିମନ୍ୟୁ : ମୁକ୍ତିକୁ ବନ୍ଧନ ମନେକରି ତୁମେ ଦୁଃଖସହ ଛନ୍ଦି ହୋଇ ଯାଇଛ । ପରିବର୍ତ୍ତନକୁ ସ୍ୱାଗତ ନ କଲେ ସୃଷ୍ଟିର ସୃଜନକ୍ରିୟା ସିମୀତ ହୋଇଯିବ । ଏକ ନୂତନ ସର୍ଜ୍ଜନା ପାଇଁ ତୁମେ ଏ ଯୁଦ୍ଧର ବନ୍ଦନାଗାନ କର ।

ବଳଦତ୍ତ : ସେମାନଙ୍କ ଅଗୋଚରରେ ସେମାନେ କୁରୁଯୁଦ୍ଧର ବଶମ୍ବଦ ସାଜିଛନ୍ତି । ମୋର ମନର ଅହେତୁକ ଦ୍ୱନ୍ଦ୍ୱ ପରି ମୋର ପ୍ରତ୍ୟାଶା ସବୁକିଛି ଅଲୋଡ଼ା ଅବାନ୍ତର ପାଲଟିଯାଇଛି । ଏ ଯୁଦ୍ଧର ବିରତି ପରେ ତୁମର ନିଜ ବାକ୍ୟ ତୁମକୁ ଏକ ଅପରିଚିତ ବ୍ୟକ୍ତିର ବକ୍ତବ୍ୟ ପରି ନିରର୍ଥକ ମନେହେବ । ସେତେବେଳେ ପୁଣି ମୁଁ ଫେରିଆସିବି । (ପ୍ରସ୍ଥାନ)

ଅଭିମନ୍ୟୁ : ଏକ ଦ୍ୱିଧାଗ୍ରସ୍ତ ମନନେଇ ମୋ କଥାକୁ ଭୁଲ ବୁଝି ତୁମେ ଅଭିମାନରେ ଫେରିଚାଲିଗଲ । ସିଂହାସନପ୍ରାପ୍ତି, ଯୁଦ୍ଧଲିପ୍ସା, ରକ୍ତନଦୀ କୁରୁଯୁଦ୍ଧର ଅନ୍ତିମ ଲକ୍ଷ୍ୟ ନୁହେଁ । ଅସହାୟ ଅତ୍ୟାଚାରିତ, ଚିର ଅବହେଳିତ ପାଣ୍ଡବମାନେ ଆଜି ବିଦ୍ରୋହର ସ୍ୱର ତୋଳିଛନ୍ତି । ସେମାନଙ୍କ ନିଷ୍ପେଷିତ ସ୍ୱପ୍ନ ଆଜି ବିପ୍ଳବର ଝଙ୍କାର ଆଣିଛି । ଏହା ଯେମିତି ଇତିହାସର ଏକ ଘଡ଼ିସନ୍ଧିମୁହୂର୍ତ୍ତ । ନୂତନ ସକାଳର ଆବାହନୀ ପାଇଁ ସାମାନ୍ୟ ପ୍ରସ୍ତୁତି ମାତ୍ର···

ଉତ୍ତରା : ସ୍ୱପ୍ନବିଳାସୀ କୁମାର ଅନେକ ସ୍ୱପ୍ନ ପରି ତୁମର ଏ ଅନୁଭୂତିର ଦୃଶ୍ୟ ଯଦି ଉପଲବ୍ଧିରେ ମିଥ୍ୟା ପ୍ରମାଣିତ ହୋଇ ତୁମକୁ ପ୍ରତାରିତ କରେ, ତୁମ ନୈରାଶ୍ୟର ସୀମା ରହିବ ନାହିଁ ।

ଅଭିମନ୍ୟୁ : ରାଜବଧୂଙ୍କ କର୍ତ୍ତବ୍ୟ ଶାଣିତ—ମାତ୍ର ଦୃଷ୍ଟ ନୁହେଁ ।

ଉତ୍ତରା : ଏହି ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ କୁମାର । ସିଂହାସନର ସମ୍ମୋହନ ଶକ୍ତି ବିଜୟ ଉଲ୍ଲସିତ ପାଣ୍ଡବମାନଙ୍କୁ ଆମନ୍ତ୍ରିତ କରିଦେବ । ସେମାନେ ପୁନରାୟ କୌରବରାଜ୍ୟ ସ୍ଥାପନ ନିମନ୍ତେ ଉନ୍ମତ୍ତ ହୋଇ ମାତିଉଠିବେ ।

ଅଭିମନ୍ୟୁ : ଏହିପରି ସଙ୍କଟମୟ ମୁହୂର୍ତ୍ତରେ ଅଭିମନ୍ୟୁମାନେ ଜନ୍ମ ନିଅନ୍ତି । ତା'ପରେ ଇତିହାସର ସ୍ରୋତ କେତୋଟି ମୁହୂର୍ତ୍ତପାଇଁ ସ୍ତିମିତ ହୋଇଯାଏ ।

ଉତ୍ତରା : ବର୍ତ୍ତମାନ ତୁମକୁ ମୋହାଚ୍ଛନ୍ନ କରିଛି । ତୁମେ ସ୍ୱପ୍ନପ୍ରବଣ ହୋଇଉଠିଛ । କିନ୍ତୁ ଏହା ଚରମ ସତ୍ୟ—ଇତିହାସର ଗତି ଯୁଗ ଯୁଗ ପାଇଁ ଉତ୍ତରା ଆଉ ଅଭିମନ୍ୟୁର ଭାଗ୍ୟକୁ ନିୟନ୍ତ୍ରିତ କରୁଥିବ । କେଉଁ ଏକ ନିର୍ବୋଧ ସମୟର ଇଙ୍ଗିତରେ ଆମେ ସୃଷ୍ଟି କରି ଚାଲିଥିବା ଗୋଟିଏ ପରେ ଗୋଟିଏ କୁରୁକ୍ଷେତ୍ର । ଅଥଚ ଆମେ ଯେ ଅଦୃଷ୍ଟର ହତଭାଗ୍ୟ କ୍ରୀଡ଼ନକ ମାତ୍ର । ଏହି ସତ୍ୟକୁ ଗ୍ରହଣ କରିବାକୁ ସର୍ବଦା ଆମର କୁଣ୍ଠାବୋଧ ।

ଅଭିମନ୍ୟୁ : ନା ଉତ୍ତରା, ତୁମର ଏହି କଥା ଏକ ଅପରିଚତାର ବିଳାପ ପରି ମୋ ଭିତରେ ଏକ ଆଶ୍ଚର୍ଯ୍ୟ ଆଲୋଡ଼ନ ସୃଷ୍ଟି କରିଛି । ଯଦି ସୂର୍ଯ୍ୟୋଦୟ ଏକାନ୍ତ ସତ୍ୟ ତେବେ ସୂର୍ଯ୍ୟୋଦୟର ସ୍ୱପ୍ନକୁ ମିଥ୍ୟା କହି ସତ୍ୟକୁ ଅସ୍ୱୀକାର କରିବା ଆତ୍ମପ୍ରବଞ୍ଚନା ନୁହେଁ କି ?

ଉତ୍ତରା : (କାନ୍ଦିଉଠି) ବନ୍ଦକର, ତୁମର ଏହି ସୂର୍ଯ୍ୟୋଦୟର ସ୍ୱପ୍ନ । ଉତ୍ତରା ଭାଗ୍ୟାକାଶରେ ଏହା ସୂର୍ଯ୍ୟାସ୍ତର ଅସ୍ପଷ୍ଟ ସୂଚନା ମାତ୍ର । ମହାଭାରତ ଯୁଦ୍ଧ ତୁମକୁ ଅନ୍ଧ କରିଛି । ରକ୍ତନଦୀର ସନ୍ତରଣ ପାଇଁ ତୁମେ ଅଧୀର ହୋଇଉଠିଛ । ଉତ୍ତରାର ବ୍ୟାକୁଳିତ ହୃଦୟର ବ୍ୟଥା ତୁମ ମନକୁ ସ୍ପର୍ଶକରେନା—ଥରଟିଏ ମହାଭାରତ ଯୁଦ୍ଧ ଆରମ୍ଭ ହୋଇଗଲେ ଏମିତି ଶହ ଶହ ଉତ୍ତରା ଅସହ୍ୟ ନୀରବ ଯନ୍ତ୍ରଣାକୁ ବୁକୁତଳେ ସାଇତିରଖି ଶଙ୍କିତ ହୃଦୟରେ ଶହ ଶହ ଅଭିମନ୍ୟୁଙ୍କୁ ବିଦାୟ ଦେବେ—ଯଦି ସେହି ଯୁଦ୍ଧର ପ୍ରଖର ସ୍ରୋତରେ ଅଭିମନ୍ୟୁ

ଦାଗଦାଜା ହୋଇଯାଏ କ'ଣ ଅବଶିଷ୍ଟ ନେଇ ବଞ୍ଚିରହିବ ଉତ୍ତରା ?
ମୋ କଥାର ଉତ୍ତର ଦିଅ । ତୁମର ନୀରବତା ମୋତେ ଯନ୍ତ୍ରଣା
ଦେଉଛି······

( ସେ ଭାଙ୍ଗିପଡ଼ୁଥିଲେ—ଅଭିମନ୍ୟୁ ଉତ୍ତରାକୁ ଚୋଇଧରୁଥିଲେ )

ଅଭିମନ୍ୟୁ : ଉତ୍ତରା, ତୁମେ ବି ସେହି ଆକାଙ୍କ୍ଷିତ ଅତିଥି ପରି ମୋ'ଠାରୁ
ଉତ୍ତର ଚାହଁ ?

ଉତ୍ତରା : ( କେବଳ ଚାହିଁ ରହିଲେ )

ଅଭିମନ୍ୟୁ : ଉତ୍ତରା, ତୁମେହିଁ ମୋର ସର୍ବଶେଷ ପ୍ରଶ୍ନ, ତୁମେହିଁ ମୋର
ସର୍ବଶେଷ ଉତ୍ତର ଉତ୍ତରା ।

( କ୍ରମେ ମଞ୍ଚ ଅନ୍ଧାର ହେଲା )



## ତୃତୀୟ ଦୃଶ୍ୟ

[ ମଞ୍ଚ ଆଲୋକିତ ହେଲା । ମଞ୍ଚର ଏକ ପାର୍ଶ୍ୱରେ ଶକୁନ ଅନ୍ୟ ପାର୍ଶ୍ୱରେ ବଳିଦତ୍ତ । ଉଭୟ ତାଳଦେଇ ଅଟ୍ଟହାସ୍ୟ କରୁଥିଲେ ]

ବଳିଦତ୍ତ : ହାଃ-ହାଃ-ହାଃ...

ଶକୁନ : ହାଃ-ହାଃ-ହାଃ...

ବଳିଦତ୍ତ : ହାଃ-ହାଃ-ହାଃ...

ଶକୁନ : ( ହଠାତ୍ ଚମକିପଡ଼ି) କିଏ ? କ'ଣ ପାଇଁ ମୋ ସାଥିରେ ଏମିତି ତାଳଦେଇ ହସିଚାଲିଛ ?

ବଳିଦତ୍ତ : ବହୁଦିନ ଧରି ମନ ଭିତରେ ଗୁମୁରି ଗୁମୁରି କାନ୍ଦୁଥିଲି । ଏବେ ବୁଝିଲି, ହସ ପରି କାନ୍ଦ ମିଥ୍ୟା, ତେଣୁ ହସୁଛି ହାଃ-ହାଃ...

ଶକୁନ : ହାଃ-ହାଃ, ତୁମେ ମୋ ସହ କଣ୍ଠ ମିଳାଇ ହସିପାରିବ ? ଏ ହସ ଶକୁନର ନିଜସ୍ୱ । ଏ ହସ କେହି ହସିପାରିବେ ନାହିଁ । ତୁମେ କାହିଁକି ଦୁଃଖରେ ଛନ୍ଦିହେବାକୁ ଇଚ୍ଛାକରିଛ ?

ବଳିଦତ୍ତ : ଦୁଃଖହିଁ ସୁଖର ଏକ ବିକଳ୍ପ ଅନୁଭୂତି । ମୋତେ ଆପଣ ଯନ୍ତ୍ରଣାରୁ କିଛି ଦାନ କରନ୍ତୁ ଆଉ ମୋ ଯନ୍ତ୍ରଣାରୁ କାଣିଚାଏ ତୋଳିନିଅନ୍ତୁ । ଦେଖିବେ ଦୁହିଁଙ୍କର ଯନ୍ତ୍ରଣା କିପରି ଏକାକାର ହୋଇଯିବ । ମୁଁ ହୋଇଯିବି ଶକୁନ । ଆଉ ତୁମେ ପାଲଟିଯିବ ବଳିଦତ୍ତ ।

ଶକୁନ : ଅସମ୍ଭବ, ତୁମେ କଦାପି ଶକୁନ ଭୂମିକାରେ ଅବତୀର୍ଣ୍ଣ ହୋଇପାରିବ ନାହିଁ । ଶକୁନର ଅଜସ୍ର ଦୁଃଖକୁ ଆପଣାର କରି ହସିବାକୁ ତୁମର ସାମର୍ଥ୍ୟ କାହିଁ ?

ବଳିଦତ୍ତ : ମୋର ପ୍ରଚ୍ଛନ୍ନଶକ୍ତିର ପରିଚୟ ଦେବାକୁ ମୋତେ ମାତ୍ର ଥରଟିଏ ସୁଯୋଗ ଦିଅନ୍ତୁ । ବଳିଦତ୍ତ ସବୁକିଛି କରିପାରିବ ।

ଶକୁନି : ଅସମ୍ଭବ ! ତା'ହେଲେ ପୁଣି ଏକ ନୂତନ ଇତିହାସ ରଚନା ହେବ ।

ବଳଦତ୍ତ : ତୁମର ବଶବର୍ତ୍ତୀ ହୋଇ ପଥ ଭୁଲନ୍ତୁ ନାହିଁ । ସବୁଦିନ ପରି ଜୀବନର ଗତି ଅପରିବର୍ତ୍ତିତ ରହିଥିବ । ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତରେ ବ୍ୟତିକ୍ରମ ହେବନାହିଁ । ପକ୍ଷୀର କାକଳିରେ ବନରାଜି ପ୍ରତିଧ୍ୱନିତ ହେବ । ସମୟର ସ୍ରୋତ କଦାପି ସ୍ତିମିତ ହେବନାହିଁ ।

ଶକୁନି : ମୁଁ ତୁମକୁ ବୁଝିପାରେନା—ଏକ ଦୁର୍ବୋଧ ପ୍ରଶ୍ନ ପରି ପ୍ରତୀୟମାନ ହେଲେବି ତୁମେ ଯେ ଏକ ଚିରନ୍ତନ ସତ୍ୟ ଏ କଥାକୁ ମୁଁ ମିଥ୍ୟା ପ୍ରମାଣିତ କରିବି କିପରି ?

ବଳଦତ୍ତ : ତା'ହେଲେ ମୋର ଅମୀମାଂସିତ ପ୍ରଶ୍ନର ଶେଷ ମୀମାଂସା ହେବାର ସମ୍ଭାବନା କ୍ଷୀଣହେଉ ମୁଁ ଫେରିଯାଉଛି ।

( ଯିବାକୁ ଉଦ୍ୟତ—ଆସିଛନ୍ତି ଗାନ୍ଧାରୀ )

ଗାନ୍ଧାରୀ : ନା, ତୁମେ ଯାଇପାରିବ ନାହିଁ ।

ଶକୁନି : ଭଉଣୀ ଗାନ୍ଧାରୀ···( ପ୍ରଣାମ କରନ୍ତି )

ବଳଦତ୍ତ : ମୋର ପ୍ରଣାମ ଗ୍ରହଣ କରନ୍ତୁ ମାତା ଗାନ୍ଧାରୀ । ମୁଁ ହସ୍ତିନା-ନଗରୀର ଜଣେ ସାମାନ୍ୟ ପ୍ରଜା ମାତ୍ର । ( ପ୍ରଣାମ କଲେ )

ଗାନ୍ଧାରୀ : ତୁମେ ନିରୁତ୍ସାହିତ ହୋଇ ଫେରିଯାଉଥିଲ—କ'ଣ ତୁମର ଅଭିଳାଷ ?

ଶକୁନି : ସେ ଏକ ଯୁଦ୍ଧଆତଙ୍କିତ ମଣିଷଟିଏ । ଏ ଯୁଦ୍ଧର ଅସାରତା ତା ମନରେ ଦ୍ୱନ୍ଦ୍ୱ ଭରିଦେଇଛି ।

ବଳଦତ୍ତ : ମା, ଯଦି ସିଂହାସନ ଆଉ ରାଜ୍ୟପ୍ରାପ୍ତି କୌରବ-ପାଣ୍ଡବମାନଙ୍କ ଭିତରେ ସଂଘର୍ଷର ଏକମାତ୍ର କାରଣ ହୁଏ, ତେବେ କଣ ପାଇଁ ଏ ରାଜ୍ୟର ଅଗଣିତ ନିରୀହ ପ୍ରଜା ନିଜର ରକ୍ତଦେଇ ଏ ଯୁଦ୍ଧକୁ ସମ୍ବର୍ଦ୍ଧିତ କରିବେ । ନିଜର ସବୁକିଛି ବିସର୍ଜ୍ଜନ କରି ସେମାନଙ୍କ ମଧ୍ୟରୁ ଜଣେ କାହାକୁ ସିଂହାସନାରୂଢ଼ କରିବେ । ମାତ୍ର ସେମାନେ ପାଇବେ ନା ରାଜ୍ୟ ନା ସିଂହାସନ ।

ଶକୁନ : ତାହାହିଁ ସେମାନଙ୍କର ଭାଗ୍ୟ । ରାଜା ଆଜ ରାଜ୍ୟର ଭାଗ୍ୟଠାରୁ ସେମାନଙ୍କ ଭାଗ୍ୟକୁ ବିଚ୍ଛିନ୍ନ କରିବା ଧୃଷ୍ଟତା ମାତ୍ର । ରାଜାର ଭାଗ୍ୟ କାଳେକାଳେ ପ୍ରଜାର ଭାଗ୍ୟକୁ ସୁନିୟନ୍ତ୍ରିତ କରେ ।

ବଳଦତ୍ତ : ତାହାହିଁ ଯଦି ଧ୍ରୁବବାଣୀ, ରାଜାର ଭାଗ୍ୟାକାଶରେ ଆଲୋକର ରୋଷଣି ଜାଳିବାପାଇଁ ସେମାନେ କେବଳ ଏଇଥିପାଇଁ ପତଙ୍ଗ ପରି ଯୁଦ୍ଧବହ୍ନିରେ ଝାସ ଦିଅନ୍ତୁ—ଏପରି ଏକ ସତ୍ୟର ଅପଳାପକୁ ମୁଁ ସହ୍ୟ କରିପାରିବି ନାହିଁ ।

ଗାନ୍ଧାରୀ : ଶକୁନ, ହସ୍ତିନାନଗରୀର ଏହି ନିରୀହ ପ୍ରଜାଟିର ମନର ଭାଷା ତୁମେ ବୁଝିବ ମହାମହିମ ମହାରାଜ । ଦୁର୍ଯ୍ୟୋଧନଙ୍କ ପାଖରେ ପହଞ୍ଚାଇଦିଅ । ଜଣଙ୍କର ଖିଆଲପାଇଁ ଏ ରାଜ୍ୟ ଯେମିତି ଚରମ ଦୁର୍ଦ୍ଦିନର ସମ୍ମୁଖୀନ ନ ହେଉ ।

ଶକୁନ : କୁରୁପତି ଏ ଯୁଦ୍ଧରେ ଜୟଲାଭ କଲେ ଏକ ନୂତନ ହସ୍ତିନାନଗରୀ ନିର୍ମାଣରେ ବ୍ରତୀ ହେବେ—ଯେଉଁ ରାଜ୍ୟରେ ପ୍ରଜାମାନେ ସମସ୍ତ ଦୁଃଶ୍ଚିନ୍ତା ପରିହାର କରି ମହାଆନନ୍ଦରେ ଭୋଗବିଳାସରେ କାଳାତିପାତ କରିବେ ।

ବଳଦତ୍ତ : ସବୁଯୁଗରେ, ସବୁକାଳରେ ରାଜାର ସ୍ୱପ୍ନ ପ୍ରଜାର ସବୁ ସ୍ୱପ୍ନର କାରଣ ହୁଏ । ସମସ୍ତେ ଏମିତି ଆଶାର ଆଶ୍ୱାସନା ଶୁଣାଇ ଆମ ଭଳି ନିର୍ବୋଧଙ୍କୁ ପଥଭ୍ରଷ୍ଟ କରନ୍ତି । ଯୁଦ୍ଧ ସରେ । ପୁଣି ଜଣେ ମହାମହିମ ସମ୍ରାଟ ସିଂହାସନାରୂଢ଼ ହୁଅନ୍ତି । ତାଙ୍କର ଖିଆଲରେ ରାଜ୍ୟ ଚଳେ । ପ୍ରଜାର ଭାଗ୍ୟ କସ୍ମିନକାଳେ ବଦଳେ ନାହିଁ । ମୁଁ ଫେରିଯାଉଛି ।

ଗାନ୍ଧାରୀ : ତୁମେ ଆଉ କେତେଦଣ୍ଡ ଅଟକିଯାଅ । ଯୁଦ୍ଧଉନ୍ମତ୍ତ ଏ ରାଜ୍ୟର ରାଜା ଆଉ ତାର ଅନ୍ଧ ଅନୁଚରବର୍ଗ ଶୁଣନ୍ତୁ ଏ ରାଜ୍ୟରେ ଏପରି ଜଣେ କିଏ ଅଛି ଯେ ଏ ଅନ୍ୟାୟର ପ୍ରତିବାଦ ଧ୍ୱନିଟିଏ ତୋଳୁଛି ।

ଶକୁନ : ଏ ମୂଲ୍ୟହୀନ ପ୍ରତିବାଦ ନିଜ ଫଳାପ ପରି ନିଜଭିତରେ ମିଳେଇ ଯିବ । କୁରୁପତି ମୋ ଅପେକ୍ଷାରେ ଥିବେ, ଆସୁଛି । (ପ୍ରସ୍ଥାନ)

ବଳଦତ୍ତ : ସତ୍ୟକୁ ସ୍ୱୀକୃତ ଦିଅନ୍ତୁ ମା, ଏହାହିଁ କାଳେ କାଳେ ଶାସିତର କପାଳଲିଖନ । ଶକୁନିମାନଙ୍କର ପଶାକାଠିରେ ସେମାନଙ୍କର ଭାଗ୍ୟର ରୂପ ଘଡ଼ିକଘଡ଼ି ବଦଳୁଥାଏ ।

ଗାନ୍ଧାରୀ : ତୁମେ ମୋ ହାତ ଧର । ତୁମେହିଁ ମୋତେ ସମୁଚିତ ମାର୍ଗ ପ୍ରଦର୍ଶନ କରିପାରିବ । ଗାନ୍ଧାରୀର ଅସହାୟତାକୁ ତୁମେହିଁ କେବଳ ବୁଝିପାରିବ ।

ବଳଦତ୍ତ : ମା—(ଆସିଛନ୍ତି ଅଭିମନ୍ୟୁ)

ଅଭିମନ୍ୟୁ : ମୋର ପ୍ରଣାମ ଗ୍ରହଣ କରନ୍ତୁ ଜେଜେମା !

ଗାନ୍ଧାରୀ : ଅଭିମନ୍ୟୁ, ଆସ ବାବା, ମୋର କୋଳକୁ ଆସ । ତୁମେ ମୋର ନୟନର ମଣି । ଅନ୍ଧର ଲଉଡ଼ି । ଏତେଦିନ ଧରି କୁଆଡ଼େ ଥିଲ ବାବା ?

ଅଭିମନ୍ୟୁ : କୁରୁଯୁଦ୍ଧ ପାଇଁ ପ୍ରସ୍ତୁତି ମୋର ସମସ୍ତ ସମୟ ଅପହରଣ କରି ନେଇଛି ।

ଗାନ୍ଧାରୀ : ନା, ବାବା, ତୁମେ ଯେ ଆମ ସଭିଙ୍କର ଆଗାମୀ ଭବିଷ୍ୟ, ଏ ଯୁଦ୍ଧ ତୁମର ପୁଷ୍ପପରି କୋମଳ ମନକୁ ସଂକ୍ରମିତ ନକରୁ ।

ବଳଦତ୍ତ : ମାତା ଗାନ୍ଧାରୀଙ୍କ ସୁପରାମର୍ଶ ଗ୍ରହଣ କରନ୍ତୁ କୁମାର । ହସ୍ତିନା-ନଗରୀକୁ ଭାଗ୍ୟଦେବୀ ସୁନଜର ଦେବେ ।

ଅଭିମନ୍ୟୁ : ଏ ଯୁଦ୍ଧରେ ଭାଗ ନ ନେଇ ନିଷ୍କ୍ରିୟ ରହିଗଲେ ଗୁରୁତର ଧର୍ମହାନି ହେବ । ମାନବିକ ମୂଲ୍ୟବୋଧର ଅପମୃତ୍ୟୁ ଘଟିବ । ଧର୍ମ ସଂସ୍ଥାପନା ପାଇଁ ଏ ଯେମିତି ଆନ୍ଦୋଳନରେ ଅଭିମୁଖେ ଏକ ନିରବଚ୍ଛିନ୍ନ ଶୋଭାଯାତ୍ରା । ଅନ୍ୟାୟ ବିରୁଦ୍ଧରେ ଏ ଏକ ଗୌରବ ଅଭିଯାନ । ଏ ମହାସମରରେ ଅଂଶୀଦାର ନ ହେଲେ ମହାକାଳ-ପାଖରେ ଦ୍ରୋହୀ ରହିଯିବି ।

ଗାନ୍ଧାରୀ : ମୋର ଆଶା ନିରାଶାରେ ପରିଣତ ହୋଇଛି । ନା, ବାବା ଅଭିମନ୍ୟୁ ! ବାବା ମୋର ! ତୁମେ ଉତ୍ତରା ନିକଟକୁ ଫେରିଯାଅ । ତୁମେ ଆମ ସମସ୍ତଙ୍କ ପାଇଁ ଆସନ୍ତାକାଲର ସମ୍ପଦ । ଅଭିମନ୍ୟୁ ବିନା ସମଗ୍ର ହସ୍ତିନାନଗରୀ ହୃତଶ୍ରୀ ହୋଇଯିବ ।

ଅଭିମନ୍ୟୁ : ମୋତେ ଆଶୀର୍ବାଦ କରନ୍ତୁ ଜେଜେମା । ଯୁଦ୍ଧର ଶେଷପରିଣତି ଜୟପରାଜୟ ମୋ ପାଇଁ ଅବାନ୍ତର । ହସ୍ତିନାନଗରୀର ମଙ୍ଗଳ ପାଇଁ ଏ ଯୁଦ୍ଧ ଅବଶ୍ୟମ୍ଭାବୀ ବର୍ତ୍ତମାନର ଆମନ୍ତ୍ରଣକୁ ଉପେକ୍ଷା-କଲେ ଆସନ୍ତାକାଲି ମୋ ପାଇଁ ଅନୁତାପର କାରଣ ହେବ । ମୋତେ ଭବିଷ୍ୟତର ଅନିଶ୍ଚିତତା ମଧ୍ୟକୁ ଠେଲି ଦିଅନ୍ତୁନାହିଁ ।

( ପ୍ରଣାମ କରି ପ୍ରସ୍ଥାନ )

ବଳଦତ୍ତ : ମୋର ଆଶଙ୍କା ସତ୍ୟରେ ପରିଣତ ହୋଇଛି । ଏ ଯୁଦ୍ଧ ଏକ ପ୍ରଶ୍ନ ପାଲଟି ଯାଇଛି । ଯାହାର ସମ୍ଭାବ୍ୟ ଉତ୍ତର ଆମ ସମସ୍ତଙ୍କୁ ଅଗୋଚର । ମହାକାଳ ଯେପରି ମୁଖ ବ୍ୟାଦାନକରି ଆମ ସମସ୍ତଙ୍କୁ ଗ୍ରାସ କରିବାକୁ ଧାଇଁ ଆସୁଛି । ଏହାର କବଳରୁ ରକ୍ଷା, ମୁକ୍ତି, ନିସ୍ତାର ନାହିଁ । ଦୁର୍ଯ୍ୟୋଧନ, ଦୁଃଶାସନ, ଅଭିମନ୍ୟୁ ସମସ୍ତେ ସେ' ତ ଅସହାୟ ଦ୍ରଷ୍ଟା ମାତ୍ର । ଏଠି ବର୍ତ୍ତମାନ ଏତେ ପ୍ରଖର ଯେ ଗତମାନ ଭବିଷ୍ୟତକୁ ଭ୍ରୁଣ ପରି ଲକ୍ଷ ଲକ୍ଷ ଯୋଜନକୁ ନିକ୍ଷେପ କରୁଛି ।

ଗାନ୍ଧାରୀ : ଗାନ୍ଧାରୀର ଭାଗ୍ୟ ସଦାସର୍ବଦା ଗାନ୍ଧାରୀକୁ ବିଦ୍ରୂପ କରୁଛି । ମୋର ସମସ୍ତ ଆବେଦନ, ନିବେଦନ, ମିନତି ବ୍ୟର୍ଥ ହୋଇଛି । ଯୁଦ୍ଧର ଆବର୍ତ୍ତ ଭିତରେ ଆମେ କେତୋଟି ନିପୀଡ଼ିତ ଆତ୍ମା— ଆମର ଆର୍ତ୍ତନାଦ ସେମାନେ କେହି ଶୁଣି ପାରିବେ ନାହିଁ । ତୁମେ ମୋତେ ଅନ୍ୟ ଏକ ଅନ୍ଧାର ନଗରୀକୁ ନେଇ ପାରିବ ?

ବଳଦତ୍ତ : ମା !

ଗାନ୍ଧାରୀ : ଏ ଆଲୋକନଗରୀରୁ ଆଲୋକ ସବୁଦିନ ପାଇଁ ନିର୍ବାପିତ ହୋଇଛି । ମୋତେ ସେହି ରାଜ୍ୟକୁ ନେଇଚାଲ, ଯେଉଁଠି ଆଲୋକ ଅନ୍ଧାରର ଗୁପ୍ତାବୃତ୍ତ ଭିତରେ ଏକ ନୂତନ ନଗରୀର ଅଭ୍ୟୁଦୟ ହେଉଥିବ—ଯେଉଁଠି ଶାନ୍ତିର ବାର୍ତ୍ତା ବିହଙ୍ଗର ମଧୁର ସଙ୍ଗୀତ ପରି ଆତ୍ମା, ମନକୁ ଆମୋଦିତ କରୁଥିବ—ଯେଉଁଠି ତୁମର ସବୁ ପ୍ରଶ୍ନର ଉତ୍ତର ତୁମକୁ ମିଳିଯାଇ ପାରୁଥିବ ।

ବଳଦତ୍ତ : ମା···ଏମିତି ଏକ ରାଜ୍ୟ କ'ଣ ସମ୍ଭବ ମା ?

(ବଳଦତ୍ତ ଗାନ୍ଧାରୀଙ୍କର ହାତ ଧରିଛି—ମଞ୍ଚ ଅନ୍ଧାର ହୋଇଯାଇଛି)

●

# ଚତୁର୍ଥ ଦୃଶ୍ୟ

[ ଅନ୍ଧ ଧୃତରାଷ୍ଟ୍ରଙ୍କୁ ଯୁଦ୍ଧର ବିବରଣୀ ପ୍ରଦାନ କରୁଥିଲେ ସଞ୍ଜୟ ]

ସଞ୍ଜୟ : ମହାରାଜ, ଭାଗ୍ୟର ନିର୍ମମ ପରିହାସ—କୁରୁଯୁଦ୍ଧର ଦଶମ ଦିବସ ଅତିକ୍ରାନ୍ତ ହୋଇଛି—ପିତାମହ ଭୀଷ୍ମ ଶରଶଯ୍ୟାରେ ଅନ୍ତିମ ଶୟନ କରିଛନ୍ତି—କୌରବମାନେ ଏକ ଅନିଶ୍ଚିତ ସ୍ୱପ୍ନ ଓ କାଳ୍ପନିକ ଦୁଃଖର ଆବର୍ତ୍ତରେ ଉତ୍ପୀଡ଼ିତ । କୁରୁପତି ଦୁର୍ଯ୍ୟୋଧନ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ସେନାପତି ପଦରେ ଅଭିଷିକ୍ତ କରିଛନ୍ତି ।

ଧୃତରାଷ୍ଟ୍ର : କୌରବମାନଙ୍କ ପ୍ରତି ଭାଗ୍ୟଲକ୍ଷ୍ମୀ ସର୍ବଦା ବିତସ୍ପୃହ । ମହାରଥୀ ଭୀଷ୍ମ ଶରଶଯ୍ୟାସୀନ—ଏହାହିଁ କୌରବମାନଙ୍କର ଚରମ ବିପର୍ଯ୍ୟୟର ପୂର୍ବାଭାଷ । କୌରବମାନଙ୍କର ବିଜୟ ସମ୍ପର୍କରେ ମୁଁ ସନ୍ଦିହାନ ।

ସଞ୍ଜୟ : ମାତ୍ର ଗୁରୁ ଦ୍ରୋଣାଚାର୍ଯ୍ୟ ଚକ୍ରବ୍ୟୂହ ରଚନା କରି ପାଣ୍ଡବମାନଙ୍କ ଅହମିକାର ଦୁର୍ଗକୁ ଧୂଳିସାତ୍ କରିବେ ବୋଲି କୁରୁପତିଙ୍କ ନିକଟରେ ସଂକଳ୍ପବଦ୍ଧ—ତୃତୀୟ ପାଣ୍ଡବ ପାର୍ଥ ବ୍ୟତୀତ ଅନ୍ୟ ପାଣ୍ଡବ ଭ୍ରାତାମାନେ ଚକ୍ରବ୍ୟୂହ ଭେଦର ଗୂଢ଼ରହସ୍ୟ ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଏହାହିଁ ସେମାନଙ୍କର ପରାଜୟର ନିଶ୍ଚିତ କାରଣ ହେବ ବୋଲି କୌରବମାନେ ଦୃଢ଼ ଆଶା ପୋଷଣ କରିଛନ୍ତି ।

ଧୃତରାଷ୍ଟ୍ର : ତୃତୀୟ ପାଣ୍ଡବ ପାର୍ଥ ମହାନ ଯୋଦ୍ଧା ଓ ସର୍ବଗୁଣ ସମ୍ପନ୍ନ । ପୁନଶ୍ଚ ପାଣ୍ଡବମାନେ ବିବେକ ଅନୁଶାସିତ ଓ ଶ୍ରୀକୃଷ୍ଣ ଆଶ୍ରିତ । ତେଣୁ ପାଣ୍ଡବମାନଙ୍କୁ ପରାଜିତ କରିବାର କଳ୍ପନା କୌରବମାନଙ୍କ ପାଇଁ ଏକ ଅବାସ୍ତବ ସ୍ୱପ୍ନ ହୋଇ ରହିଯିବ ।

ସଞ୍ଜୟ : ସେମାନଙ୍କ ପାଖରେ ଏକ ଗୋପନ ସମ୍ବାଦ ପହଞ୍ଚି ଯାଇଛି । ଆସନ୍ତାକାଲି ପ୍ରତ୍ୟୁଷରୁ ଅର୍ଜୁନ ହସ୍ତୀନାନଗରୀ ଉପାନ୍ତରେ ନାରାୟଣୀ ସେନାଙ୍କ ସହ ସଂଗ୍ରାମରତ ରହିବେ—ତେଣୁ ଭୀମଙ୍କୁ

ସେନାପତି ପଦରେ ଅଧିଷ୍ଠିତ କରାଯାଇଛି—କୁରୁପତିଙ୍କ ମନରେ ଦୃଢ଼ ପ୍ରତ୍ୟୟ ସୃଷ୍ଟି ହୋଇଛି । କୃଷ୍ଣ ଓ ଅର୍ଜ୍ଜୁନଙ୍କ ଅବର୍ତ୍ତମାନରେ ପାଣ୍ଡବମାନଙ୍କର ପରାଜୟ ସୁନିଶ୍ଚିତ । କୁରୁପତି ମାତୁଳ ଶକୁନି ଓ ବନ୍ଧୁ ଜୟଦ୍ରଥଙ୍କ ସହ ଏ ସମ୍ପର୍କରେ ଗମ୍ଭୀର ମନ୍ତ୍ରଣାରତ ।

( ମଞ୍ଚର ଅନ୍ୟ ଏକ ଭାଗରେ ଦେଖାଗଲା ଦୁର୍ଯ୍ୟୋଧନ, ଶକୁନି ଓ ଜୟଦ୍ରଥ ମନ୍ତ୍ରଣାରତ — ସେମାନଙ୍କ ସମସ୍ତ କଥୋପକଥନ ସାଙ୍କେତିକ ) ସେମାନଙ୍କଠାରୁ ଆଲୋକ ଅପସରି ଯାଇଛି । ଦ୍ୱିତୀୟ ଯୋନରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ । ଆସିଛି ଅଭିମନ୍ୟୁ— ପୁନଶ୍ଚ ଆଲୋକ ଧୃତରାଷ୍ଟ୍ର ଓ ସଞ୍ଜୟଙ୍କୁ ଆଲୋକିତ କରୁଛି ।

ସଞ୍ଜୟ : ଶରଶଯ୍ୟାରେ ପିତାମହ ଭୀଷ୍ମଙ୍କୁ ଦେଖି ତୃତୀୟ ପାଣ୍ଡବ ପାର୍ଥ ଗଭୀର ଶୋକରେ ମ୍ରିୟମାଣ ହୋଇପଡ଼ିଥିଲେ । ପୁନଶ୍ଚ ଶ୍ରୀକୃଷ୍ଣଙ୍କ ଅଭୟବାଣୀରେ ତାଙ୍କର ସନ୍ତାପିତ ମନରୁ ଗ୍ଳାନି ଦୂର ହୋଇଛି । ସହସା ଏକ ଅଲୌକିକ ଘଟଣାର ସୂତ୍ରପାତ ହୋଇଛି—ହଠାତ୍ ଅଭିମନ୍ୟୁ ପ୍ରବେଶ କରି ଏହି ଯୁଦ୍ଧରେ ଭାଗ ନେବା ନିମନ୍ତେ ପିତା ପାର୍ଥ ମାତୁଳ କୃଷ୍ଣଙ୍କର ଅନୁମତି ଭିକ୍ଷା କରିଛି ।

( କୃଷ୍ଣ, ଅର୍ଜ୍ଜୁନ ଓ ଅଭିମନ୍ୟୁ ମୁହଁରୁ ଆଲୋକ ଲିଭି ଯାଇଛି । )

ଧୃତରାଷ୍ଟ୍ର—ଏହା ଅତୀବ ଅଶୁଭ ଲକ୍ଷଣ । କେଉଁଥିପାଇଁ କୋମଳମତି ଅଭିମନ୍ୟୁର ନିଷ୍ପାପ ହୃଦୟକୁ ଯୁଦ୍ଧର ମୋହମୋହାଚ୍ଛନ୍ନ କରିଛି ।

ସଞ୍ଜୟ : ଏହି ଅନାକାଂକ୍ଷିତ ଯୁଦ୍ଧର କରାଳ ଛାୟା । ଏକ ଗୋପନ କାମନା ପରି ହସ୍ତିନାନଗରୀର ପ୍ରତ୍ୟେକ ନରନାରୀର ମନରେ ନିଭୃତରେ ଆଶ୍ରୟ ବାନ୍ଧିଛି—ବିଜୟର ଏକ କାଳ୍ପନିକ ସୁଖ ପ୍ରତ୍ୟେକଙ୍କୁ ଯୁଦ୍ଧର ବଳୟ ଭିତରକୁ ଟାଣି ନେଇଛି—ଅଭିମନ୍ୟୁ ପାଇଁ ଏହାର ବ୍ୟତିକ୍ରମ ସମ୍ପୂର୍ଣ୍ଣ ଅସମ୍ଭବ ।

ଧୃତରାଷ୍ଟ୍ର : ନା, ଯୁଦ୍ଧର କବଳରୁ କାହାରି ନିଷ୍କୃତି ନାହିଁ । ଏହାର ବହ୍ନି-ମାନ ଶିଖା ପତଙ୍ଗ ପରି ସମସ୍ତଙ୍କୁ ପ୍ରଲୁବ୍ଧ କରିଛି—କୁହ ସଞ୍ଜୟ, ରଜନୀର ସମାପ୍ତି ପାଇଁ ଆଉ କେତେ ପ୍ରହର ବାକି ?

ସଞ୍ଜୟ : ମହାରାଜ ! ରାତିର ସମାପ୍ତି ଘଟିଛି । ପୂର୍ବାକାଶ ଲୋହିତବର୍ଣ୍ଣ କଲାଣି—ପ୍ରଭାତ ସୂର୍ଯ୍ୟର ରକ୍ତ ଆଲେଖ୍ୟ ରକ୍ତାକ୍ତ ରଣଭୂମିକୁ ଆହୁରି ରକ୍ତରଞ୍ଜିତ କରିଦେଇଛି—ଅଶ୍ୱର ହ୍ରେଷାରବରେ ସମର ପ୍ରାଙ୍ଗଣ ପ୍ରକମ୍ପିତ—ମୁଁ ମହାରାଜଙ୍କୁ ସେହି ଦୃଶ୍ୟାବଳୀ ସହ ଘନିଷ୍ଠ କରି ଦେଉଛି ।

( ସମସ୍ତ ଅନ୍ତବାହ୍ୱତର ସୂଚନା—ସଞ୍ଜୟ ଧୃତରାଷ୍ଟ୍ରଙ୍କ ପ୍ରସ୍ଥାନ । ପ୍ରଥମ ଯୋନରେ ଦୁର୍ଯ୍ୟୋଧନ, ଜୟଦ୍ରଥ ଓ ଶକୁନି )

ଦୁର୍ଯ୍ୟୋଧନ : ଦିବସର ପ୍ରଥମ ପ୍ରହର ଅତୀତ ହୋଇଛି । ପାଣ୍ଡବମାନେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ରଚିତ ଚକ୍ରବ୍ୟୂହ ଭେଦ କରିବାକୁ ସମ୍ପୂର୍ଣ୍ଣ ବିଫଳ ହୋଇଛନ୍ତି । ତୃତୀୟ ପାଣ୍ଡବ ପାର୍ଥ ରାଜ୍ୟର ସୀମାନ୍ତରେ ନାରାୟଣୀ ସେନାଙ୍କ ସହ ଯୁଦ୍ଧ କରୁଛନ୍ତି ।

ଜୟଦ୍ରଥ : ଯୁଦ୍ଧରେ ବିଜୟ ଲାଭ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ । ଅର୍ଜ୍ଜୁନଙ୍କ ଅନୁପସ୍ଥିତିରେ ପାଣ୍ଡବ ଚାରିଭାଇଙ୍କ ବିନାଶ ସୁନିଶ୍ଚିତ ଓ ଭ୍ରାତୃଶୋକ ଅର୍ଜ୍ଜୁନଙ୍କ ମୃତ୍ୟୁର କାରଣ ହେବ ।

ଶକୁନି : ଆଶୁ ସିଦ୍ଧାନ୍ତରେ ଉପନୀତ ହେବା ବିଜ୍ଞତାର ପରିଚାୟକ ହେବ ନାହିଁ । ଯଦି ନାରାୟଣୀ ସେନାଙ୍କୁ ପରାଜିତ କରି ଅର୍ଜ୍ଜୁନ ହଠାତ୍ ଫେରି ଆସନ୍ତି, ତା'ହେଲେ ସମସ୍ତ କଳ୍ପନା ଜଳ୍ପନାର ଯବନିକା ପତନ ହେବ ।

ଜୟଦ୍ରଥ : କିନ୍ତୁ ତାହା ଆଉ ସମ୍ଭବ ନୁହେଁ ମାତୁଳ ଶକୁନି । ପାଣ୍ଡବ ଚାରି ଭାଇ ଚକ୍ରବ୍ୟୂହ ଭେଦ ନ କରି ପାରି ବିମର୍ଷ ବଦନରେ ଅଶ୍ରୁମୋଚନ କରୁଛନ୍ତି । ସେମାନଙ୍କର ବୁଦ୍ଧି ଭ୍ରଷ୍ଟ ଘଟିଛି । ଶ୍ରୀକୃଷ୍ଣ କଦାପି ଏହି ସଙ୍କଟରୁ ପରିତ୍ରାଣ କରିବାକୁ ସମର୍ଥ ହେବେନାହିଁ ।

ଦୁର୍ଯ୍ୟୋଧନ : ମାତୁଳ ଶକୁନିଙ୍କ ବିଜ୍ଞ ପରାମର୍ଶ ସ୍ୱାଗତଯୋଗ୍ୟ । ଭାବପ୍ରବଣତା ଏବଂ ଅବାସ୍ତବ କଳ୍ପନା ଅନିଷ୍ଟର କାରଣ ହେବ—ଏ ସମ୍ପର୍କରେ ବିଶଦ ଆଲୋଚନା କରି ବିଜ୍ଞ ପଦକ୍ଷେପ ନେବା ବିଧେୟ ।

(ଶକୁନି, ଜୟଦ୍ରଥ ଓ ଦୁର୍ଯ୍ୟୋଧନଙ୍କ ପ୍ରସ୍ଥାନ । ଦ୍ୱିତୀୟ ଯୋନରେ ଦେଖାଗଲା ଚିନ୍ତାମଗ୍ନ ଅଭିମନ୍ୟୁ ଓ ଆସିଛି ଉତ୍ତରା )

ଅଭିମନ୍ୟୁ : ଆଃ ଚରମ ଦୁର୍ଭାଗ୍ୟ ! କୃଷ୍ଣ ସମର୍ପିତ ପାଣ୍ଡବ ଭ୍ରାତାମାନେ ଚକ୍ରବ୍ୟୂହ ଭେଦ କରିବାରେ ବିଫଳ ହୋଇଛନ୍ତି । ସେମାନେ ଲଜ୍ଜା ଓ ଦୁଃଖରେ ମ୍ରିୟମାଣ ହୋଇ ମଥା ନତକରି ବସିଛନ୍ତି ।

ଉତ୍ତର : ( ପ୍ରବେଶ କରି ) ଏତେ ଚିନ୍ତାମଗ୍ନ ଯେ—

ଅଭିମନ୍ୟୁ : ପିତା ଓ ମାତୁଳ କୃଷ୍ଣଙ୍କ ଅନୁପସ୍ଥିତିରେ ପାଣ୍ଡବମାନେ ଏକ ଚରମ ସଙ୍କଟର ସମ୍ମୁଖୀନ ହୋଇଛନ୍ତି । ସେମାନଙ୍କର ସମସ୍ତ ମର୍ଯ୍ୟାଦା ଭୂଲୁଣ୍ଠିତ । ଅଭିମନ୍ୟୁ ପାଇଁ ଏହା ଏକ ଅଗ୍ନିପରୀକ୍ଷାର ମୁହୂର୍ତ୍ତ । ପାଣ୍ଡବମାନଙ୍କର ତମିସ୍ର ଭାଗ୍ୟାକାଶରେ ଅଭିମନ୍ୟୁ ହିଁ ଏକମାତ୍ର ଆଶା ଆଉ ଆଲୋକର ବାର୍ତ୍ତା ସଞ୍ଚାର କରିବାକୁ ସମର୍ଥ ।

ଉତ୍ତର : ଦ୍ରୋଣାଚାର୍ଯ୍ୟଙ୍କର ଚକ୍ରବ୍ୟୂହ ଭେଦ ନକରିପାରି ପାଣ୍ଡବମାନେ ପରାଜୟ ବରଣ କରିଛନ୍ତି । ତୁମେ ସେ ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ସ୍ୱେଚ୍ଛାକୃତ ଭାବେ ବିପଦକୁ ସ୍ୱାଗତ କରିବା ତୁମ ପାଇଁ ମଙ୍ଗଳପ୍ରଦ ହେବ ନାହିଁ ।

ଅଭିମନ୍ୟୁ : ଉତ୍ତର ! ଜୀବନର ସଙ୍କଟମୟ ମୁହୂର୍ତ୍ତରେ ତୁମେ ମୋତେ ସମୁଚିତ ମାର୍ଗ ପ୍ରଦର୍ଶନ କରି ମୋର ଯାତ୍ରାକୁ ବିଜୟମଣ୍ଡିତ କରିଛ । ଚକ୍ରବ୍ୟୂହ ଭେଦର ଗୂଢ଼ ରହସ୍ୟ ମୋତେ ସମ୍ପୂର୍ଣ୍ଣ ବିଦିତ । ଜନନୀ ଗର୍ଭରେ ଅବସ୍ଥାନ ସମୟରେ ମାତା ସୁଭଦ୍ରାଙ୍କୁ ପିତା ଚକ୍ରବ୍ୟୂହ ଭେଦର ସମସ୍ତ ରହସ୍ୟ ବର୍ଣ୍ଣନା କରିଥିଲେ । ମାତ୍ର ଏହାପରେ କିପରି ଫେରି ଆସିବାକୁ ପଡ଼ିବ ତାହା କହୁଥିବା ସମୟରେ ଗଭୀର ନିଦ୍ରାମଗ୍ନ ହୋଇ ପଡ଼ିଲେ । ତେଣୁ ତାହା ମୋ ନିମନ୍ତେ ଅଜଣା ରହିଗଲା ।

ଉତ୍ତର : ଫେରି ଆସିବାର ପଥ ଜଣା ନ ଥିବା ହେତୁ ତୁମେ ଚକ୍ରବ୍ୟୂହ ଭେଦ କରିବା ପାଇଁ ଦୁଃସାହସୀ ହୁଅ ନାହିଁ । ମାତୁଳ ଶ୍ରୀକୃଷ୍ଣ, ପିତା ପାର୍ଥଙ୍କ ଆଗମନକୁ ପ୍ରତୀକ୍ଷା କରିବା ଶ୍ରେୟସ୍କର ହେବ ।

ଅଭିମନ୍ୟୁ : ଅନ୍ତଃପ୍ରବାହିତା ଫଲ୍‌ଗୁ ପରି ତୁମେ ମୋର ଜୀବନର ଗତିପଥକୁ ନିୟନ୍ତ୍ରିତ କରୁଛ । ପିତାଙ୍କ ଅନୁପସ୍ଥିତିରେ ପାଣ୍ଡବ-

ମାନଙ୍କର ମର୍ଯ୍ୟାଦା ଭୂଲୁଣ୍ଠିତ ହେବ । ଏହା କଦାପି ତୁମର କାମ୍ୟ ନହୋଇ ପାରେ । ଅଭିମନ୍ୟୁଙ୍କୁ ଚକ୍ରବ୍ୟୂହ ଭେଦ କରିବାକୁ ତୁମେ ଅନୁମତି ଦିଅ ।

ଉତ୍ତରା : ତୁମ ଶକ୍ତିକୁ କଳନା କରିବାକୁ ଅସମର୍ଥା ଉତ୍ତରା । ତୁମେ ଏକ ମାୟାବୀ ସ୍ୱପ୍ନ ପରି ମୋତେ ଅହରହ ମୋହାଚ୍ଛନ୍ନ କରୁଛ । ଏକ ସୁଦୂର ସଙ୍ଗୀତର ଲହର ପରି ମୋର ମନ ହୃଦୟକୁ ସଂକ୍ରାମିତ କରୁଛ । ଏକ ଅଜଣାଫୁଲର ବାସ୍ନା ପରି ମୋର ସ୍ମୃତିକୁ ଉଚ୍ଛାସିତ କରୁଛ । ତୁମର ଅପ୍ରତିହତ ଗତିକୁ ପ୍ରତିରୋଧ କରିବାକୁ ମୁଁ ସମ୍ପୂର୍ଣ୍ଣ ଶକ୍ତିହୀନା ।

ଅଭିମନ୍ୟୁ : କୁରୁଯୁଦ୍ଧର ଜୟ ପରାଜୟ ମୋ ପାଇଁ ଅବାନ୍ତର ହୋଇଉଠିଛି । ଏକ ସାର୍ଥକ ଜୀବନର ସ୍ୱପ୍ନ ମୋତେ ବିଭୋର କରିଛି । ତୁମର ଅନୁରାଗ ତୁମର ଜୀବନ ପଥକୁ ପୁଷ୍ପିତ କରୁ ।

ଉତ୍ତରା : ଅଭିମନ୍ୟୁ ନିବେଦିତା ଉତ୍ତରା । ଅଭିମନ୍ୟୁର ଉଜ୍ଜ୍ୱଳ ସ୍ୱପ୍ନ ଭିତରେ ଉତ୍ତରା ତାର ସତ୍ତା ହରାଇଛି । ଅପ୍ରତ୍ୟକ୍ଷ ଭାବରେ ଏ ଯୁଦ୍ଧ ମୋତେ ଆକର୍ଷିତ କରିଛି । ମୁଁ ଜାଣେ, ଏ ଯୁଦ୍ଧ ତୁମର ମନର ସୀମା ସ୍ପର୍ଶ କରିପାରିବ ନାହିଁ । ହାୟ, ଉତ୍ତରା ଏବେ ବି ବୁଝିପାରେନା । ତାର ଭାଗ୍ୟାକାଶ ଚିରଆଲୋକିତ ନା ତମିସ୍ର ।

ଅଭିମନ୍ୟୁ : ବୃଥା ଚିନ୍ତାରେ ନିମଗ୍ନ ହୁଅ ନାହିଁ ଉତ୍ତରା । ଯୁଦ୍ଧର ଶେଷ ଫଳାଫଳ ହିଁ କେବଳ ଅଦୃଷ୍ଟକୁ ଗୋଚର । କିନ୍ତୁ ଏହାହିଁ ଚିରନ୍ତନ ସତ୍ୟ । ଉତ୍ତରାର ଭାଗ୍ୟାକାଶରେ ଏକ ସମୁଜ୍ଜ୍ୱଳ ନକ୍ଷତ୍ର ହୋଇ ଅନନ୍ତ ଯୁଗ ଧରି ଅଭିମନ୍ୟୁ ଝଲସୁଥିବ ।

ଉତ୍ତରା : ଯାଅ କୁମାର ! ତୁମର କପାଳରେ ମୁଁ ବିଜୟର ଟୀକା ଆଙ୍କି ଦେଉଛି । ଏକ ଅକଥନୀୟ ଯନ୍ତ୍ରଣା ଧରି ତୁମର ଫେରିବା ପଥକୁ ପ୍ରତୀକ୍ଷା କରି ରହିଲି । ତୁମ ଆଗମନ ପରେ ମୋର ସ୍ୱେଚ୍ଛାକୃତ ନିର୍ବାସନର ଅବସାନ ଘଟିବ ।

( ଉତ୍ତରା ଅଭିମନ୍ୟୁଙ୍କୁ ବିଦାୟ ଦେଉଛି । ମଞ୍ଚ କ୍ରମଶଃ ଅନ୍ଧକାର ହୋଇ ଯାଉଛି । )

●

## ପଞ୍ଚମ ଦୃଶ୍ୟ

[ ଦୂରରୁ ଭାସି ଆସୁଛି—'ଜୟ ବୀର ଅଭିମନ୍ୟୁର ଜୟ'— ଯୁଦ୍ଧ କ୍ଷେତ୍ରରେ ଜୟଦ୍ରଥ ]

ଜୟଦ୍ରଥ : ଅସମ୍ଭବ । ସାମାନ୍ୟ ବାଳକ ଅଭିମନ୍ୟୁ ପାଖରେ ଅମିତ ଶକ୍ତିର ଅଧିକାଂଶ କୌରବ ସେନା ପରାଜୟ ସ୍ୱୀକାର କରିଛନ୍ତି । ବୀର ବାଳକ ଅଭିମନ୍ୟୁ ଚକ୍ରବ୍ୟୂହ ଭେଦ କରିବାକୁ ସମର୍ଥ ହୋଇଛି । ଦ୍ରୋଣ, ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ ସମସ୍ତ କୌରବ ବୀର-ମାନେ ଅଭିମନ୍ୟୁ ନିକଟରେ ପରାଜିତ । ମହାକାଳ ପରି ଅଭିମନ୍ୟୁ ଧ୍ୱଂସର ତାଣ୍ଡବ ଲୀଳା ସୃଷ୍ଟି କରିଚାଲିଛି ।

( ଆସିଛନ୍ତି ଦୁର୍ଯ୍ୟୋଧନ ଓ ଶକୁନି )

ଦୁର୍ଯ୍ୟୋଧନ : ବନ୍ଧୁ ଜୟଦ୍ରଥ ! ଆମର ବିଶ୍ୱାସ ମିଥ୍ୟାରେ ପ୍ରମାଣିତ ହୋଇଛି ! କୌରବ ସମ୍ମାନ ଭୂଲୁଣ୍ଠିତ । ଏମିତି ଏକ ମର୍ଯ୍ୟାଦା-ହୀନ ଜୀବନଠାରୁ ମୃତ୍ୟୁ ଶତଗୁଣରେ ଶ୍ରେୟସ୍କର ।

ଶକୁନି : ବିପଦରେ ଅଧୀର ହେବା ସମିଚୀନ ହେବ ନାହିଁ । ପ୍ରାଜ୍ଞମାନେ ଆପଦମୁକ୍ତ ପାଇଁ ଉପଯୁକ୍ତ ପନ୍ଥା ନିର୍ଣ୍ଣୟ କରି ସେହି ମାର୍ଗରେ ବ୍ରତୀ ହୁଅନ୍ତି । ସପ୍ତରଥୀମାନେ ଯୁଦ୍ଧରେ ଉଚିତ୍ କୌଶଳ ଅବ-ଲମ୍ବନ କଲେ ଅଭିମନ୍ୟୁର ବିଜୟ ବିଡ଼ମ୍ବନା ହେବ ।

ଦୁର୍ଯ୍ୟୋଧନ : ମାତୁଳଙ୍କ ଇଙ୍ଗିତପୂର୍ଣ୍ଣ ବକ୍ତବ୍ୟ ମୋ ପାଇଁ ସ୍ପଷ୍ଟ ନୁହେଁ । ମୁଁ ମାତୁଳଙ୍କୁ ସୁପରାମର୍ଶ ଦେବା ପାଇଁ ଅନୁରୋଧ କରୁଛି ।

ଜୟଦ୍ରଥ : ମାତୁଳ ଶକୁନି ଉଚିତ୍ ପରାମର୍ଶ ଦେଇଛନ୍ତି । ସପ୍ତରଥୀମାନେ ସମ୍ମିଳିତ ଭାବେ ଆକ୍ରମଣ କଲେ ଭାଗ୍ୟ ଦେବୀ ଆମ ପ୍ରତି ସୁପ୍ରସନ୍ନା ହେବେ ।

ଦୁର୍ଯ୍ୟୋଧନ : ଯୁଦ୍ଧର ସମସ୍ତ ନୀତି, ନିୟମକୁ ଲଙ୍ଘନ କରି ସପ୍ତରଥୀମାନେ ଏକତ୍ରିତ ହୋଇ ଏକ ଅବୋଧ ବାଳକକୁ ସମ୍ମିଳିତ ଭାବେ

ଆକ୍ରମଣ କରିବେ । ମହାକାଳ କଦାପି ଏ କଳଙ୍କ କାଳିମାକୁ କ୍ଷମା ଦେବ ନାହିଁ । ଜନରବ ପ୍ରଚରିତ ହେବ । କୌରବମାନେ ମାର୍ଗ-ଭ୍ରଷ୍ଟ ହୋଇ ଅନ୍ୟାୟର ପନ୍ଥା ଅନୁସରଣ କରି ଅଭିମନ୍ୟୁଙ୍କୁ ପରାଜିତ କରିଛନ୍ତି । ଏକ ନୀରବ ଦୁଃଖ ମୋର ସମସ୍ତ ଜୀବନ ସତ୍ତାକୁ ସନ୍ତୁଳିତ କରିବ ।

ଜୟଦ୍ରଥ : ଆତ୍ମପ୍ରବଣତା ଯୁଦ୍ଧ ନୀତିର ଘୋର ବିରୋଧୀ । ଯୁଦ୍ଧରେ ବିଜୟ ଲାଭ ହିଁ ଏକମାତ୍ର କାମ୍ୟ । ଏଥିପାଇଁ ଯେ କୌଣସି ପନ୍ଥା ଗ୍ରହଣ କଲେ ତାହା ଦୂଷଣୀୟ ନୁହେଁ । ( ଆସିଲୁ ବଳଦତ୍ତ )

ବଳଦତ୍ତ : ନା । ନା । ତା' ହୋଇପାରେନା । ଏ ଯୁଦ୍ଧ ପାଇଁ ଆତ୍ମଘାତୀ ନୀତି ହେବ । ମୁଁ କୁରୁପତିଙ୍କୁ ସବିନୟ ନିବେଦନ କରୁଛି, ଏ ଅନ୍ୟାୟ ମାର୍ଗରୁ କ୍ଷାନ୍ତ ହୁଅନ୍ତୁ ।

ଦୁର୍ଯ୍ୟୋଧନ : ତୁମେ ଫେରିଯାଅ । ତୁମକୁ ଦେଖିଲେ ମନେହୁଏ, କେଉଁ ଏକ ଅପରିଚିତ ରାଜଗୃହରୁ ଦୁଃସମ୍ବାଦର ବାର୍ତ୍ତା ଧରି ତୁମେ ଯେମିତି ଏଠି ପହଞ୍ଚିଯାଇଛ । ମୁଁ ଶକ୍ତିହୀନ ହୋଇପଡୁଛି । ତୁମର ଉପସ୍ଥିତି ମୁଁ ସହ୍ୟ କରି ପାରୁନି ।

ବଳଦତ୍ତ : ମହାରାଜ, ଯୁଦ୍ଧ କାଳେ କାଳେ ହତ୍ୟା ବିରୋଧୀ । ହତ୍ୟା ଏକ ବିବେଚିତ ଅମାନୁଷିକ କର୍ମ । ଅଭିମନ୍ୟୁ ଆମ ସମସ୍ତଙ୍କ ପାଇଁ ଆଗାମୀ ଦିନର ଉତ୍ତର । ତାଙ୍କୁ ଅନ୍ୟାୟ ଭାବରେ ବିସର୍ଜନ ଦିଅନ୍ତୁ ନାହିଁ । ସେ ଚିର ବିଜୟୀ । ସେ ଆମ ସମସ୍ତଙ୍କ ମନର ଉପହାର । ସପ୍ତରଥୀମାନେ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରନ୍ତୁ ।

ଜୟଦ୍ରଥ : ତୁମେ ଅତି ଶୀଘ୍ର ଏହି ସ୍ଥାନ ପରିତ୍ୟାଗ କର । ଯୁଦ୍ଧର ସଙ୍କ-ଟନ୍ଧ ମୁହୂର୍ତ୍ତରେ ତୁମର ଉପସ୍ଥିତି ଆଦୌ ଅନୁକୂଳ ନୁହେଁ ।

ବଳଦତ୍ତ : ନା, ବଳଦତ୍ତ ନୀରବ ଦ୍ରଷ୍ଟା ହୋଇ ପାରେନା । ତୁମେ ତାର କଣ୍ଠରେ ପ୍ରତିବାଦର ଶବ୍ଦ ଭରିଦେଇଛ । ସେ ମୃତ୍ୟୁ ପର୍ଯ୍ୟନ୍ତ ଚଳା ଫଟାଇ ଚିତ୍କାର କରିବ । 'ଏହା ଅନ୍ୟାୟ । ଏହା ଅନ୍ୟାୟ' ।

ଶକୁନି : ତୁମେ ସର୍ବାଗ୍ରେ ଏହି ସ୍ଥାନରୁ ବିଦାୟ ନିଅ ।

ଦୁର୍ଯ୍ୟୋଧନ : ବନ୍ଧୁ ଜୟଦ୍ରଥ । ତୁରନ୍ତ ଏହି ବ୍ୟକ୍ତିକୁ ଜଣାଇଦିଅ । ଯେ ଯଦି ଅବାଧ ହୁଏ; ତାଙ୍କୁ ଚରମ ଶାସ୍ତି ଭୋଗିବାକୁ ପଡ଼ିବ ।

ବଳଦତ୍ତ : ଯୁଦ୍ଧର ସୌଖୀନ ନିଶାରେ ପାଗଳ ହୋଇ ତୁମେ ସବୁ ରକ୍ତ ନଦୀରେ ରକ୍ତ ପଦ୍ମର ସ୍ୱପ୍ନ ଦେଖ । ମାତ୍ର କାଳେ କାଳେ ବଳଦତ୍ତ, ଅଭିମନ୍ୟୁମାନେ ଏହି ଯୁଦ୍ଧରେ ବଳି ପଡ଼ନ୍ତି । (ପ୍ରସ୍ଥାନ)

ଜୟଦ୍ରଥ : ( ହସି ହସି ) ହାଃ-ହାଃ-ହାଃ···ଲୋକଟା ନିଶ୍ଚିତ ଭାବେ ପାଗଳ ପାଲଟି ଯାଇଛି । ନିଜର ପାଗଳାମି ବୁଝି ନପାରି ପ୍ରଳାପ କରି ଚାଲିଛି । ଆସନ୍ତୁ ମାତୁଳ । ଆମକୁ ପୁନରାୟ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।

ଦୁର୍ଯ୍ୟୋଧନ : ମୁଁ ତୁମର ପରାମର୍ଶକୁ ଗ୍ରହଣ କରୁଛି । ଅଭିମନ୍ୟୁର ସୁନିଶ୍ଚିତ ପରାଜୟ ପାଇଁ ମୁଁ କୌଣସି ଅପଖ୍ୟାତିକୁ ଭ୍ରୂକ୍ଷେପ କରିବି ନାହିଁ ।

(ଶକୁନି, ଦୁର୍ଯ୍ୟୋଧନ ଓ ଜୟଦ୍ରଥଙ୍କ ପ୍ରସ୍ଥାନ—ଆସିଛି ଅଭିମନ୍ୟୁ)

ଅଭିମନ୍ୟୁ : ହାଃ-ହାଃ-ହାଃ-ମାତୁଳ ! ତୁମରି ଆଶୀର୍ବାଦକୁ ପାଥେୟ କରି ମୁଁ ଏକାକୀ ଚକ୍ରବ୍ୟୂହ ଭେଦ କରିବାକୁ ସମର୍ଥ ହୋଇପାରିଛି । କୌରବମାନଙ୍କର ଅହଙ୍କାରର ଅବସାନ ଘଟିଛି । ସପ୍ତରଥୀମାନେ ପରାଜୟ ବରଣ କରିଛନ୍ତି । ଏ କ'ଣ ଏକ ଅଭିନବ ଦୃଶ୍ୟ ମୋର ଦୃଷ୍ଟିଗୋଚର ହେଉଛି । କୌରବ ସେନାମାନେ ଯୁଦ୍ଧର ସମସ୍ତ ନୀତି, ନିୟମ ଲଙ୍ଘନ କରି ସମବେତ ଭାବରେ ମୋତେ ଆକ୍ରମଣ କରିବାକୁ ଅଗ୍ରସର ହେଉଛନ୍ତି । ଚକ୍ରବ୍ୟୂହ ଭେଦ ପରେ ଫେରି-ଯିବାର ପଥ ମୋତେ ଅଜଣା । ତୁରନ୍ତ ମୋତେ ଏହି ସ୍ଥାନ ପରି-ତ୍ୟାଗ କରିବାକୁ ପଡ଼ିବ । ନଚେତ୍ ସପ୍ତରଥୀମାନେ ମୋର ବିପଦର କାରଣ ହେବେ ।

(ପ୍ରସ୍ଥାନ । ବିପରୀତ ଦିଗରୁ ସଞ୍ଜୟ ଓ ଧୃତରାଷ୍ଟ୍ରଙ୍କ ପ୍ରବେଶ)

ସଞ୍ଜୟ : ମହାରାଜ, ବୀର ବାଳକ ଅଭିମନ୍ୟୁ ସପ୍ତରଥୀମାନଙ୍କୁ ପରାଜିତ କରି ଚକ୍ରବ୍ୟୂହ ଭେଦ କଲାପରେ ପାଣ୍ଡବ ଶିବିରରେ ହର୍ଷଧ୍ୱନି ଓ କୌରବ ଶିବିରରେ ଗଭୀର ଭାଳେଣି ପଡ଼ିଯାଇଥିଲା । କୁରୁପତି ମଥାନତ କରି ଗଭୀର ଚିନ୍ତାମଗ୍ନ ଥିଲେ । ଏକ ଚପଳମତି ବାଳକ-ଠାରୁ ସପ୍ତରଥୀଙ୍କ ପରାଜୟ—ଏ ଅପମାନ ଅସହ୍ୟ ।

ଧୃତରାଷ୍ଟ୍ର : ତା'ହେଲେ ପରାଜିତ ସପ୍ତରଥୀମାନେ ଏହି ସଙ୍କଟରୁ ତ୍ରାହି ପାଇବା ନିମନ୍ତେ କେଉଁ ପନ୍ଥା ଅବଲମ୍ବନ କରୁଛନ୍ତି ?

ସଞ୍ଜୟ : କୌରବମାନେ ଯେଉଁ ମାର୍ଗ ଅନୁସରଣ କରୁଛନ୍ତି ତାହା ଧର୍ମ ଓ ଯୁଦ୍ଧନୀତି ବିରୋଧୀ । ଶକୁନି ପରାମର୍ଶ ଦେଲେ ସପ୍ତରଥୀମାନେ ସମ୍ମିଳିତ ଭାବରେ ଚତୁର୍ଦ୍ଦିଗରୁ ଅଭିମନ୍ୟୁଙ୍କୁ ଆକ୍ରମଣ କରନ୍ତୁ । ନଚେତ୍ କୌରବସେନାଙ୍କର ପରାଜୟ ଅନିବାର୍ଯ୍ୟ । କୁରୁପତି ଦ୍ୱିଧାଗ୍ରସ୍ତ ମନରେ ଶକୁନିଙ୍କ ପରାମର୍ଶକୁ ଗ୍ରହଣ କରିଛନ୍ତି । ସେମାନେ ଏକତ୍ରିତ ହୋଇ ଆକ୍ରମଣ ନିମନ୍ତେ ପ୍ରସ୍ତୁତ ହେଉଛନ୍ତି ।

ଧୃତରାଷ୍ଟ୍ର : ଏହା ଘୋର ଅନ୍ୟାୟ । ଅତି ନିନ୍ଦନୀୟ କାର୍ଯ୍ୟ ଯୁଦ୍ଧର ନୀତି ଲଙ୍ଘନ କଲେ ଧର୍ମହାନି ହୁଏ, ରାଜା ଧର୍ମଦ୍ରୋହୀ ହୁଏ, ରାଜ୍ୟକୁ ପାପ ଗ୍ରାସ କରେ ।

ସଞ୍ଜୟ : ମୋର ଦିବ୍ୟ ଚକ୍ଷୁରେ ଏହା ମୋର ଦୃଷ୍ଟିକୁ ଆସିଛି । ଅଭିମନ୍ୟୁ ଏକାକୀ ସପ୍ତରଥୀଙ୍କ ସହ ସଂଗ୍ରାମ କରିଚାଲିଛି । ସେମାନଙ୍କ ସମବେତ ଆକ୍ରମଣରେ ଅଭିମନ୍ୟୁ କ୍ଲାନ୍ତ । ତା' ହସ୍ତରୁ ଅସ୍ତ୍ର ଖସି ପଡ଼ିଛି । ଅସ୍ତ୍ରହୀନ ଅଭିମନ୍ୟୁଙ୍କୁ ସମୁଚିତ ଶାସ୍ତି ଦେବାପାଇଁ ସପ୍ତ-ରଥୀମାନେ ସମସ୍ତ ନ୍ୟାୟ ନୀତି ବର୍ଜନ କରି ନିର୍ଲଜ୍ଜ ଭାବରେ ଆକ୍ରମଣ କରୁଛନ୍ତି ।

ଧୃତରାଷ୍ଟ୍ର : ସଞ୍ଜୟ, ତୁମର ବର୍ଣ୍ଣନାରେ ଏଠାରେ ବିରତ ହୁଅ । ଏ ଅନ୍ୟାୟବାଣୀ ମୁଁ ଶ୍ରବଣ କରି ପାରିବି ନାହିଁ । ଉଚିତ୍ ଅନୁଚିତ୍ ଜ୍ଞାନର ବିଲୋପ ଘଟିଲେ ପରିଣତି ଭୟାବହ ହୁଏ, ମୁଁ ଜନ୍ମାନ୍ଧ । ଏ ଦୃଶ୍ୟ ମୁଁ ଅନ୍ଧ ଚକ୍ଷୁରେ ମଧ୍ୟ କଳ୍ପନା କରି ପାରୁ ନାହିଁ ! ଯଦି ଶାନ୍ତି ଓ ନ୍ୟାୟ ପ୍ରତିଷ୍ଠା ପାଇଁ ଯୁଦ୍ଧ ଅବଶ୍ୟମ୍ଭାବୀ, ଏ ଅନ୍ୟାୟ ଯୁଦ୍ଧ ମୋତେ ଆତଙ୍କିତ କରୁଛି । ଆସ ସଞ୍ଜୟ—ମୁଁ ବିଶ୍ରାମ ଚାହେଁ ।

( ଧୃତରାଷ୍ଟ୍ର ଓ ସଞ୍ଜୟଙ୍କର ପ୍ରସ୍ଥାନ ଓ କ୍ଲାନ୍ତ ଅଭିମନ୍ୟୁର ପ୍ରବେଶ )

ଅଭିମନ୍ୟୁ : ମୁଁ ଏକାକୀ । ଫେରିଯିବାର ପଥ ଅବରୁଦ୍ଧ ହୋଇଛି । ଏକ ନିଃଶବ୍ଦ ବାଣୀ ମୋତେ ଉତ୍ତେଜିତ୍ ଓ ଜାଗ୍ରତ କରୁଛି । ମହାଭାରତ

ଯୁଦ୍ଧରେ ଅଭିମନ୍ୟୁର ସ୍ୱପ୍ନ କଦାପି ନିଷ୍ଫଳ ହେବ ନାହିଁ । ଏହା ଏକ ସାକାର ରୂପ ଧାରଣକରି ହସ୍ତିନାନଗରୀକୁ ଗ୍ରାସକରିବ । ଏକ ଉଜ୍ଜ୍ୱଳ ସମ୍ଭାବନାକୁ ମୂଳପୋଛ କରିଦେବା ପାଇଁ କୌରବ-ମାନଙ୍କର ଷଡ଼ଯନ୍ତ୍ର ବ୍ୟର୍ଥ ହେବ । ଅଭିମନ୍ୟୁର ପରାଜୟରେ ଏହାର ବିଲୋପ ଘଟିବ ନାହିଁ । ଏକ ନୂତନ ଯୁଗର ଅଭ୍ୟୁଦୟ ପାଇଁ ଅନନ୍ତ କାଳଧରି ଏ ସଂଗ୍ରାମ ଅବ୍ୟାହତ ରହିବ ।

( ଜୟଦ୍ରଥର ପ୍ରବେଶ )

ଜୟଦ୍ରଥ : ହାଃ—ହାଃ—ହାଃ ଅଭିମନ୍ୟୁ ! ଚକ୍ରବ୍ୟୂହ ଭେଦକରି ତୋ ପାଇଁ ଫେରିଯିବାର ମାର୍ଗ ବନ୍ଦ ହୋଇଯାଇଛି । ତୋର ସ୍ପର୍ଦ୍ଧା ଓ ଅହମିକାର ପତନ ଘଟିଛି ।

ଅଭିମନ୍ୟୁ . ପାର୍ଥିବ ମୋହ ତୁମକୁ ଗ୍ରାସ କରିଛି । ଅଭିମନ୍ୟୁର ସ୍ୱପ୍ନର ସୀମାନ୍ତକୁ ତୁମେ କଦାପି ସ୍ପର୍ଶ କରିପାରିବ ନାହିଁ । ଅଭିମନ୍ୟୁର ମୃତ୍ୟୁହୀନ ଜୀବନ ପୃଥିବୀର ସ୍ଥିତି ତୁମ ପାଇଁ ଏକ କଳ୍ପନାର କାହାଣୀ ହୋଇ ରହିବ ।

ଜୟଦ୍ରଥ : ସ୍ୱପ୍ନ ବିଳାସୀ ଅଭିମନ୍ୟୁ—ଏହା ଏକ ବିସ୍ତ ଆତ୍ମାର ବିଳାପ ପରି ଶୁଭୁଛି । ଯୁଦ୍ଧ କ୍ଷେତ୍ରରେ ଏହା ଅଲୌକିକ, ଅବାନ୍ତର ଓ ଅର୍ଥହୀନ ।

ଅଭିମନ୍ୟୁ : ହେ ଅନ୍ଧ କୌରବ ସ୍ତାବକମାନେ, ଚକ୍ଷୁ ଉନ୍ମିଳନ କରି ଏକ ନୂତନ ସୂର୍ଯ୍ୟୋଦୟକୁ ଦର୍ଶନ କରି ନିଜକୁ ଧନ୍ୟ କର । ସମୟର ଜରାୟୁ ଛିନ୍ନକରି ଏକ ରକ୍ତାକ୍ତ ଉଷା ଆଗାମୀ ଦିବସର ବାର୍ତ୍ତା ବହନକରି ଜନ୍ମ ନେଉଛି । ତାହାହିଁ ଏକମାତ୍ର ସତ୍ୟ । ସେ ଏକ ସ୍ୱପ୍ନ ପରି ସମସ୍ତ ହସ୍ତିନାନଗରୀର ନରନାରୀର ମନକୁ ପୁଲ-କିତ କରୁଛି । ଏକ ମହାସମୁଦ୍ରର ଉଦ୍‌ବେଳିତ ତରଙ୍ଗ ପରି ସମସ୍ତ ଆବର୍ଜନାକୁ ଫିଙ୍ଗିଦେଇ ଏକ ନୂତନ ରାଜ୍ୟ ପ୍ରତିଷ୍ଠା ପାଇଁ ଉନ୍ମତ୍ତ ।

ଜୟଦ୍ରଥ : ଏହା ତୋର ମୃତ୍ୟୁ ପୂର୍ବର ପାଗଳାମୀ ପରି ମନେ ହେଉଛି । ଜୟଦ୍ରଥ ତୋର ଚପଳତାରେ ଭୁଲିଯିବ ନାହିଁ ।

( ଯୁଦ୍ଧ କରିଛନ୍ତି । ଆସିଛନ୍ତି ବଳଦତ୍ତ )

ବଳଦତ୍ତ : ଏ ଯୁଦ୍ଧ ହୋଇ ପାରେନା । ଏ ଯୁଦ୍ଧ ହୋଇ ପାରେନା । ଅଭି-
ମନ୍ୟୁ ନିରସ୍ତ୍ର । ମୁଁ ଏ ଯୁଦ୍ଧର ପ୍ରତିବାଦ କରୁଛି ।

ଜୟଦ୍ରଥ : ଯୁଦ୍ଧ କ୍ଷେତ୍ରରେ ଅବାଂଛିତ ଭାବରେ ଉପସ୍ଥିତ ହୋଇ ତୁମେ
ବିପଦକୁ ଆମନ୍ତ୍ରିତ କରିଛ ।

ବଳଦତ୍ତ : ( ଚିତ୍କାର କରିଛି ) ସପ୍ତରଥୀ ବର୍ଗ । ଏ ଅସାର ଯୁଦ୍ଧରୁ ନିବୃତ୍ତ
ହୁଅ । ଅଭିମନ୍ୟୁ ବିନା ହସ୍ତିନାନଗରୀ ଐଶ୍ବର୍ଯ୍ୟହୀନ ହୋଇ ଧ୍ୱଂସ
ସ୍ତୂପରେ ପରିଣତ ହେବ । ଅଭିମନ୍ୟୁ ହସ୍ତିନାନଗରୀର ଆତ୍ମା ।
ଅଭିମନ୍ୟୁ ବିନା ହସ୍ତିନାନଗରୀ ଜଡ଼ ପାଲଟିଯିବ । ଆସନ୍ତାକାଲର
ସ୍ୱପ୍ନ ମିଥ୍ୟାରେ ପରିଣତ ହେବ । ମୁଁ ପ୍ରତିବାଦ କରୁଛି ।

ଜୟଦ୍ରଥ : ହାଃ ହାଃ ହାଃ । ତୁମର ଏ ଆତ୍ମ ବିସର୍ଜନ ନିରର୍ଥକ । ଅଭି-
ମନ୍ୟୁକୁ ରକ୍ଷା କରିବାକୁ ତୁମେ କଦାପି ସକ୍ଷମ ହେବନାହିଁ । ବରଂ
ତୁମ ପରି ଅନଭିଜ୍ଞ ବ୍ୟକ୍ତି ଏ ଯୁଦ୍ଧରେ ଝାସ ଦେଇ ନିଜର ସର୍ବ-
ନାଶ କରିବ ।

ଅଭିମନ୍ୟୁ : ଯୁଦ୍ଧର କଠୋର ଅଗ୍ନିପରୀକ୍ଷା ଭିତରେ ଏମିତି ନିଜକୁ ନିକ୍ଷେପ
କର ନାହିଁ ।

ବଳଦତ୍ତ : ଏ ଯୁଦ୍ଧ ମୋର ସର୍ବସ୍ୱ ହରଣ କରିଛି । ଏ ଯୁଦ୍ଧ ହସ୍ତିନା-
ନଗରୀର ଧ୍ୱଂସର କାରଣ ହୋଇଛି । ଏହା ଅଭିମନ୍ୟୁର ସ୍ୱପ୍ନକୁ
ହତ୍ୟା କରିଛି । ବଳଦତ୍ତ ଏହାର ପ୍ରତିରୋଧ କରିବ ।

ଅଭିମନ୍ୟୁ : ନା-ନା···ତୁମେ ଏ ସ୍ଥାନରୁ ଚାଲିଯାଅ । ତୁମର ପ୍ରତିବାଦର
ଶବ୍ଦଟିଏ କୁରୁପତିଙ୍କ ରାଜପ୍ରାସାଦର ପାଷାଣ ପାଚେରୀକୁ ସ୍ପର୍ଶ କରି
ପାରିବ ନାହିଁ । ଏ ଭୁଲର ବଶବର୍ତ୍ତୀ ହୁଅ ନାହିଁ । ମୁଁ ତୁମକୁ
କୃତାଞ୍ଜଳି ପୁଟରେ ନିବେଦନ କରୁଛି ।

ବଳଦତ୍ତ : ଯୁଦ୍ଧରେ ବଳି ପଡ଼ିବା ପୂର୍ବରୁ ବଳଦତ୍ତ ତାର ପ୍ରାଣର କାହାଣୀ
ଶେଷଥର ପାଇଁ କହି ଦେବାକୁ ଚାହେଁ । ସେ ହସ୍ତିନାନଗରୀର
ନଗଣ୍ୟ ପ୍ରଜାଟିଏ ହେଲେ ବି ସେ ଏ ଯୁଦ୍ଧର ପ୍ରତିବାଦ କରି ଯୁଦ୍ଧ
ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲା । ନିଜର ଆତ୍ମବଳି ଥିଲା ଏ
ଯଜ୍ଞର ଶେଷ ପୂର୍ଣ୍ଣାହୁତି । ( ନିଜକୁ ହତ୍ୟା କରିଛି )

ଅଭିମନ୍ୟୁ : ଏ କ'ଣ କଲ ? ତୁମର ଏ ଆତ୍ମବିସର୍ଜନରେ ହସ୍ତିନାନଗ-ରୀରେ ଭୂମିକମ୍ପ ସୃଷ୍ଟି ହୋଇଛି । ଆକାଶରୁ ସୂର୍ଯ୍ୟ ଅସ୍ତମିତ ହୋଇଯାଉଛି । ତୁମର ଏ ଅନନ୍ୟସାର ମୃତ୍ୟୁ ନାହିଁ । ମୁଁ ତୁମକୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଜୟଦ୍ରଥ : ଅଭିମନ୍ୟୁ, ନିଶ୍ଚିତ ପରାଜୟ ଜାଣି କୌରବମାନଙ୍କୁ ପଥଭ୍ରଷ୍ଟ କରିବାର ଉଦ୍ୟମ ବ୍ୟର୍ଥ ହେବ । ଏଥର ମୃତ୍ୟୁର ଆବାହନ କର ।

ଅଭିମନ୍ୟୁ : ହେ ଆଗନ୍ତୁକ ! ତୁମେ ପୁଣି ଥରେ ଜୀବନସାରା ପାଇଁ ଜାଗି-ଉଠ । କେତେ ବଡ଼ ଅପୂର୍ବ ତ୍ୟାଗ ନିଷ୍ଫଳ ହୋଇଗଲା । ହେ ଧୂର୍ତ୍ତ କୌରବଗଣ ! ସମ୍ମୁଖ ଯୁଦ୍ଧରେ ପଶ୍ଚାତପଦ ନେଇ ତୁମେମାନେ ଅଧର୍ମର ମାର୍ଗ ଅନୁସରଣ କରି ଆକ୍ରମଣ କରୁଛ । ଅଭିମନ୍ୟୁ ଜୀବନଭୀରୁ ନୁହେଁ । ଆଗାମୀ ସକାଳର ବନ୍ଦନା ଗାନ କରି ମୁଁ ଯୁଦ୍ଧ କରି ଚାଲିଥିବି ।

ଜୟଦ୍ରଥ : ବାଃ, କୁରୁପତିଙ୍କ ମନସ୍କାମନା ପୂର୍ଣ୍ଣ ହୋଇଛି । ଅଭିମନ୍ୟୁର ପତନରେ କୁରୁଯୁଦ୍ଧର ପରିସମାପ୍ତି ଘଟିବ । ଚକ୍ରଟିଏ ଧରି କେତେ ସମୟ ତୁମେ ସପ୍ତରଥୀଙ୍କ ସହ ଯୁଦ୍ଧ କରିବାକୁ ସମର୍ଥ ହୋଇ ପାରିବ ?

( ଅଭିମନ୍ୟୁ ରଥ ଚକ୍ର ଧରି ଯୁଦ୍ଧ କରୁଥିଲେ । ସେ ସବୁ ଆଡ଼ୁ ଫେରି ଆସୁଥିଲେ । ସବୁ ଦ୍ୱାର ଯେପରି ବନ୍ଦ । ସତେ ଯେପରି ସପ୍ତରଥୀମାନେ ତାଙ୍କୁ ଚତୁର୍ଦ୍ଦିଗରେ ଘେରି ରହିଛନ୍ତି । ଶେଷରେ ଅଭିମନ୍ୟୁ ଓ ଜୟଦ୍ରଥ ଯୁଦ୍ଧରତ । ଅଭିମନ୍ୟୁର ପତନ । )

ଅଭିମନ୍ୟୁ : ମୁଁ ଏକ ନିରସ୍ତ୍ର ପଦାତିକ । ମାତ୍ର ନିଃସଙ୍ଗ ପଦାତିକ ନୁହେଁ । ମୁଁ ଏକ ମମତାମୟୀ ସ୍ନେହାତୁର ଜନନୀର ଆଲିଙ୍ଗନ ଅନୁଭବ କରୁଛି । ଶୂନ୍ୟତାବୋଧ ଅପସରି ଯାଇଛି । ଏକ ପ୍ରବାହମାନ ଜୀବନର ସ୍ରୋତ ଏକ ଆଲୋକ ଅନ୍ଧାର ବିହୀନ ରହସ୍ୟମୟ ଅଜଣା ନଗରୀକୁ ମୋତେ ଭସାଇ ନେଉଛି । ହସ୍ତିନାନଗରୀର ଅଗଣିତ ନରନାରୀ ସେହି ସ୍ରୋତ ସହ ସାମିଲ ହୋଇଯାଉଛନ୍ତି ।

ସେ ଏକ ଅପୂର୍ବ ଶୋଭାଯାତ୍ରା—ଅସଂଖ୍ୟ ଉଜ୍ଜ୍ୱଳ ପ୍ରଦୀପମାଳାରେ ଏ ରାଜ୍ୟ ଆଲୋକିତ ହୋଇଉଠୁଛି । ଏ ଦୁର୍ଲ୍ଲଭ ମୁହୂର୍ତ୍ତରେ ମୋ ଜୀବନ ଧନ୍ୟ ହୋଇ ଉଠିଛି । ଏକ ନୂତନ ସକାଳର ସୂର୍ଯ୍ୟ-ସ୍ନାନରେ ଏ ନଗରୀ ଝଲମଲ କରୁଛି । ନବାରୁଣ ଭାଗ୍ୟ ଯେଠି ମଥାନତ କରନ୍ତି । ଆସ ଉତ୍ତରା—ମୁହୂର୍ତ୍ତର ଆବେଗରେ ଭାଙ୍ଗି ନପଡ଼ି ପ୍ରଦୀପଧରି ସେହି ପୁଣ୍ୟ ସକାଳର ନବ ରଚନା କର । ବିଦାୟ ହସ୍ତିନାନଗରୀର ଅଗଣିତ ପ୍ରିୟ ନରନାରୀ ମୋର ପିତା, ମାତା, ଗୁରୁଜନ, କେଉଁ ଏକ ଶୂନ୍ୟ ଆକାଶରେ ନକ୍ଷତ୍ରଟିଏ ହୋଇ ଅଭିମନ୍ୟୁ ତାର କ୍ଷୀଣ ଆଲୋକରେ ଏ ନଗରୀକୁ ଆଲୋକିତ କରୁଥିବ । ତମରି ଗର୍ଭରେ ତାର ସଂଗ୍ରାମ ଚିରନ୍ତନ ଅବ୍ୟାହତ ରହିଥିବ । ବିଦାୟ । ( ପତନ )

ଜୟଦ୍ରଥ : ଅଭିମନ୍ୟୁ, ଏକ ନଶ୍ବର ସତ୍ୟ । ଅଭିମନ୍ୟୁର ଭଙ୍ଗୁର ତନୁର ବିଲୟ ଘଟିଛି । ମୃତ୍ୟୁପରେ ସେ ମୃତ୍ୟୁଞ୍ଜୟୀ ପାଲଟିଛି । ଏ ବିଜୟ ଉଲ୍ଲାସ ଏ ନଗରୀ ପାଇଁ ଗ୍ଲାନି ଓ ଲଜ୍ୟାର କାରଣ ହୋଇଛି । ଅଭିମନ୍ୟୁର ରକ୍ତରେ ଏ ମାଟି କଳଙ୍କିତ ହୋଇଉଠୁଛି । ବିଜୟ ପରାଜୟ ହୋଇ ଉପହାସ କରୁଛି । ( ଫ୍ରିଜ )

( ଆସିଛି ଦୁର୍ଯ୍ୟୋଧନ )

ଦୁର୍ଯ୍ୟୋଧନ : ଆଃ, ମୋର ପ୍ରାଣାଧିକ ପ୍ରିୟ ସନ୍ତାନ ଅଭିମନ୍ୟୁ । କୁରୁ-ପତିର ବ୍ୟାକୁଳିତ ହୃଦୟର ବ୍ୟଥା ତୁ ବୁଝିପାରିବୁନି । ତୋ ଭିତରେ ମୁଁ ମୋର ପରାଜୟ କାମନା କରୁଥିଲି । ତୁ କାହିଁକି ଅବୁଝା ହୋଇ ଏ ସଂଗ୍ରାମରେ ଝାସ ଦେଲୁ । ଦୁର୍ଯ୍ୟୋଧନ କିମ୍ବଦନ୍ତୀର ଏକ ଲାଞ୍ଛିତ ଚରିତ୍ର ହୋଇ ବଞ୍ଚି ରହିବ । ତୁ ଉଠ୍ ଅଭିମନ୍ୟୁ । ତୋର ଜ୍ୟେଷ୍ଠତାତ ଯନ୍ତ୍ରଣା ଜର୍ଜରିତ ଦୁର୍ଯ୍ୟୋଧନର ଯନ୍ତ୍ରଣା ହୁଏତ ସାମାନ୍ୟ ଲାଘବ ହୋଇପାରିବ । (ଫ୍ରିଜ)

(ଆସିଛି ଶକୁନି)

ଶକୁନି : ହାଃ–ହାଃ···ଏ କ'ଣ ହେଲା ଅଭିମନ୍ୟୁ ? ତୁ ଅନ୍ତିମନିଦ୍ରାରେ ଶୋଇ ପଡ଼ିଲା ପରେ ଶକୁନିର ଚିରନ୍ତନ ହସ ସ୍ତିମିତ ହୋଇ ଯାଇଛି । ଜୀବନ ପଶାଖେଳରେ ମୁଁ ହାରିଯାଇଛି । ଉଠ୍

ଅଭିମନ୍ୟୁ ! ତୋ ସାଙ୍ଗରେ ମୁଁ ଥରେ ପଶ୍ଚାତଖଳରେ ମାତି ଉଠିବି । ମନ ଭରି ହସିବି । (ହସିବାକୁ ଚେଷ୍ଟା କରି କାନ୍ଦି ଉଠିଛି । ଆସିଛି ଉଦ୍ଧବ )

ଉଦ୍ଧବ : ଉଠ ଅଭିମନ୍ୟୁ । ତୁମର ନିର୍ଦ୍ଦେଶରେ ମୁଁ ପ୍ରଦୀପ ଜାଳି ନୀରାଜନା କରିବାକୁ ଆସିଛି । ଏହି ମାଙ୍ଗଳିକ ଲଗ୍ନରେ ମୋ ଆଖିରେ ଲୁହର ଶ୍ରାବଣ । ମୋ ଓଠରେ ହସର ଜୁଆର । ଏକ ଅପରିଚିତ ନଗରରେ ରହି ମୃତ୍ୟୁର ମହୀଉର୍ଦ୍ଧ୍ୱରେ ତୁମେ ଯେମିତି ଜୀବନର ଜୟଗାନ କରୁଛ । ଆଉ ତୁମ ସାଙ୍ଗରେ କଣ୍ଠ ମିଳାଇ ମୁଁ ତାର ବନ୍ଦନା ଗାଉଛି । ( ଫ୍ରିଜ )

( ହଠାତ୍ ବଳଦତ୍ତ ପୁନର୍ଜନ୍ମ ପାଇ ବଞ୍ଚିଉଠିଛି । )

ବଳଦତ୍ତ : ଅଭିମନ୍ୟୁର ମୃତ୍ୟୁ ପରେ ମୁଁ ପୁନର୍ଜନ୍ମ ପାଇଛି । ଅଭିମନ୍ୟୁର ଆଞ୍ଜୁଳାଏ ଆୟୁଷ ନେଇ ମୁଁ ପୃଥିବୀରେ ବଞ୍ଚି ଉଠିଛି । ମୁଁ ଜାଣେ ବଳଦତ୍ତର ପ୍ରଶ୍ନର ଉତ୍ତର ନ ମିଳିବା ପର୍ଯ୍ୟନ୍ତ ତାର ମୃତ୍ୟୁ ନାହିଁ । ସେ ଯନ୍ତ୍ରଣାରେ ଛଟପଟ ହେଉଥିବ । ଝଡ଼ ସ୍ତିମିତ ହୋଇଛି । ଅନ୍ଧକାର ଅପସରି ଯାଇଛି । ଏକ ଆଲୋକବର୍ତ୍ତିକା ମହାଶୂନ୍ୟକୁ ଉଦ୍ଭାସିତ କରୁଛି । ହଠାତ୍ ଅଭିମନ୍ୟୁ ସେହି ଆଲୋକ-ବର୍ତ୍ତିକା ପାଲଟି ଯାଉଛି । ଶ୍ରୀକୃଷ୍ଣ ଆସୁଛନ୍ତି ଏହି ଯୁଦ୍ଧର ନୀରବ ନାୟକ । ସେ ମୋର ସବୁ ପ୍ରଶ୍ନବାଚୀର ଏକ ନିରୁତ୍ତର ଉତ୍ତର । ( ଫ୍ରିଜ ) ( ଆସିଛନ୍ତି କୃଷ୍ଣ )

କୃଷ୍ଣ : ଅଭିମନ୍ୟୁ, ହସ୍ତିନାନଗରୀରେ ଜନରବ ପ୍ରଚାରିତ ହୋଇଛି । କୁରୁ-ଯୁଦ୍ଧରେ ଅନ୍ୟାୟ ସମରରେ ସପ୍ତରଥୀଦ୍ୱାରା ଅଭିମନ୍ୟୁ ନିହତ ହୋଇଛି । ଏହା ସତ୍ୟର ଚରମ ଅପଳାପ ମାତ୍ର । ସେ ଏକ ଚିରନ୍ତନ ବିପ୍ଳବର ବାର୍ତ୍ତା । ତାର ଜନ୍ମ ନାହିଁ । ତାର ମୃତ୍ୟୁ ନାହିଁ । ସେ ଏକ ନୂତନ ସମ୍ଭାବନା ।

ତେଣୁ ଏହା କଦାପି ନାଟକର ଅନ୍ତିମ ପର୍ବ ହୋଇ ପାରେନା । ଏହା ନାଟକର ଅପୂର୍ବାରମ୍ଭ ମାତ୍ର । ଯେତେବେଳେ ସ୍ୱପ୍ନଟିଏ

ଆମକୁ ସନ୍ତୁଳିତ କରିବ, ସେତେବେଳେ ଅଭିମନ୍ୟୁ ଆମ ଭିତରେ ଜନ୍ମ ନେବ । ମୁଁ ସେଇ ସ୍ୱପ୍ନର ମାୟାରେ ବିଭୋର ହୋଇଉଠିଛି ।

ଉଠ ଅଭିମନ୍ୟୁ, ତୁମେ ଅତ୍ୟାଗ୍ରହିତ ମନର ଭାଷା । ତୁମେ ଜନ୍ମସ୍ପନ୍ଦିତ ବୁକୁର ସ୍ପନ୍ଦନ । ମୁଁ ଦେଖୁଛି ପୁଣି ଏକ ନୂତନ ଛବି ଆଙ୍କି ବିପ୍ଳବର ମହାନ୍ ସଙ୍ଗୀତ ଗାଇ ଗାଇ ତୁମେ ଏ ଧରିତ୍ରୀପୃଷ୍ଠରେ ପାଦ ଥାପୁଛ । ତାର ମୂର୍ଚ୍ଛନାରେ ସବୁ ମୃତନଦୀରେ ବନ୍ୟା ଆସିଛି । ସବୁ ମରୁସ୍ଥାନ ତରୁରେ ସବୁଜଶ୍ରୀ ଭରି ଉଠିଛି । ଏକ ନୂତନ ସୃଷ୍ଟି ଜନ୍ମ ନେଉଛି । ମୁଁ ସେହିଦିନର ପ୍ରତୀକ୍ଷାରେ ପୁଲକିତ ହୋଇ ଉଠୁଛି । ଯେହେତୁ ଅଭିମନ୍ୟୁର ମୃତ୍ୟୁ ନଥିଲା । ନାହିଁ । ଯେତେଦିନ ପର୍ଯ୍ୟନ୍ତ ମଣିଷ ମନରେ ସ୍ୱପ୍ନ ଥିବ । ନୂତନ ପୃଥିବୀ ପାଇଁ ଅସମ୍ଭବ ମମତା ଥିବ, ସେତେଦିନ ପର୍ଯ୍ୟନ୍ତ ଅଭିମନ୍ୟୁ ଆମର ସ୍ୱପ୍ନ ନେଇ ଆମର ଅନ୍ୱେଷା ନେଇ ଆମରି ଭିତରେ ବଞ୍ଚି ରହିଥିବ । ଆଉ ସେଦିନ ସେହି ମହାନ୍ ବିପ୍ଳବର ଆବାହନୀ ଗାନ କରି କୃଷ୍ଣ ହାତରେ ବାଜି ଉଠିବ ପାଞ୍ଚଜନ୍ୟ ।

( ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଫୁଙ୍କିଛନ୍ତି । ଅଭିମନ୍ୟୁ ସ୍ୱପ୍ନ ରାଜ୍ୟରୁ ଫେରି ଆସିଲା ପରି ଧୀରେ ଧୀରେ କୃଷ୍ଣଙ୍କ ଆଡ଼କୁ ଅଗ୍ରସର ହେଉଛି । ଅନ୍ୟମାନେ ତାଙ୍କର ଚତୁର୍ପାର୍ଶ୍ୱରେ ସୂର୍ଯ୍ୟଙ୍କୁ ଗ୍ରହ, ଉପଗ୍ରହ ପ୍ରଦକ୍ଷିଣ କଲା ପରି ଘୂରୁଛନ୍ତି । ମଞ୍ଚ କ୍ରମଶଃ ଅନ୍ଧାର ହୋଇଆସିଛି । )

●

ରଚନା—ସେପ୍ଟେମ୍ବର ୧୬ରୁ ୧୫, ୧୯୭୮ ମସିହା ।

ଭୁବନେଶ୍ୱର



'ଅନ୍ତିମ ପର୍ବ' ନାଟ୍ୟକାର ରବୀନ୍ଦ୍ର ନାଥ ଦାସଙ୍କ ବହୁ ପ୍ରଶଂସିତ, ବହୁ ଚର୍ଚ୍ଚିତ ଅନ୍ୟତମ ମଞ୍ଚସଫଳ ନାଟକ । ମିଥ୍‌କୁ ନେଇ ଯେଉଁ କେତୋଟି ପ୍ରତୀକଧର୍ମୀ ସ୍ୱଳ୍ପ ସଫଳତମ ନାଟକ ଏ ଯାବତ୍ ଓଡ଼ିଆ ସାହିତ୍ୟରେ ରଚିତ ହୋଇଛି, 'ଅନ୍ତିମ ପର୍ବ' ସେମାନଙ୍କ ମଧ୍ୟରୁ ଅନ୍ୟତମ ଶ୍ରେଷ୍ଠ ନାଟକ ।

ଏକ ଅର୍ଥହୀନ ଅଯୌକ୍ତିକ ସଂଘର୍ଷ ପାଇଁ ପ୍ରତି ମୁହୂର୍ତ୍ତରେ ମାନବିକ ମୂଲ୍ୟବୋଧର ଯେଉଁ ଚରମ ଅବକ୍ଷୟ ଦେଖାଦେଇଛି, ପ୍ରାପ୍ତି ଓ ଅପ୍ରାପ୍ତିର ମାନସିକ ସଙ୍କଟ ଭିତରେ ଆଜିର ଜନଜୀବନରେ ଯେଉଁ ନୈତିକ ବିପର୍ଯ୍ୟୟ ଘଟିବାକୁ ଯାଉଛି, ମହାଭାରତ ପୃଷ୍ଠଭୂମିରେ ରଚିତ ଏହି ନାଟକରେ ତାର ଏକ ସ୍ପଷ୍ଟଚିତ୍ର ପ୍ରଦାନ କରିବା ପାଇଁ ଆନ୍ତରିକ ପ୍ରୟାସ କରାଯାଇଛି ।

ଏହି ନାଟକଟି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଏକାଦଶତମ ନାଟକ ସମାରୋହରେ ମାର୍ଚ୍ଚ ୨୫ ତାରିଖ ୧୯୭୯ ମସିହାରେ ଭୁବନେଶ୍ୱର ପ୍ରଦର୍ଶନୀ ପ୍ରାଙ୍ଗଣରେ ମୁକ୍ତାଙ୍ଗନରେ ଅଭିନୀତ ହୋଇ ଉଚ୍ଛ୍ୱସିତ ପ୍ରଶଂସା ଅର୍ଜ୍ଜନ କରିଥିଲା । ପରେ ପରେ ମଧ୍ୟ ଏହାର ବେତାର ନାଟ୍ୟରୂପ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ ହୋଇଥିଲା ।

ଶ୍ରୀ ଦାସ ମଧ୍ୟ ଜଣେ ସଫଳ ଗାଳ୍ପିକ ଓ ଗୀତିକାର । ଏ ଯାବତ୍ ତାଙ୍କର ପ୍ରକାଶିତ ସୃଷ୍ଟି ହେଲା :—ଯଯାତି ଯନ୍ତ୍ରଣା (ନାଟକ), ଅନ୍ଧାର, (ନାଟକ), ବିଷଣ୍ଣ ପୃଥିବୀ (ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ନାଟକ) ଦକ୍ଷିଣ ଦରଜା (ନାଟିକା) ଶହୀଦ (ନାଟକ) ମୁଖବନ୍ଧ (ଗଳ୍ପ), ଅନେକ ଯନ୍ତ୍ରଣା (ଗଳ୍ପ) ।

ଜଗନ୍ନାଥ ରଥ; ବିନୋଦ ବିହାରୀ କଟକ-୨